# ସୂଚୀପତ୍ର


୧ । ପୃଥିବୀର ଜଙ୍ଗଲ ୧

୨ । ଭାରତର ଜଙ୍ଗଲ ସଂପଦ ୬

୩ । ଓଡ଼ିଶାର ଜଙ୍ଗଲ ଓ ବନ୍ୟସଂପଦ ୧୦

୪ । ଓଡ଼ିଶାର ପ୍ରାକୃତିକ ଜଙ୍ଗଲ କିସମ ୧୩

୫ । ଓଡ଼ିଶାର ବନସଂପଦ ୧୬

୬ । ଜଙ୍ଗଲ ଓ ଆଦିବାସୀ ୧୮

୭ । ଓଡ଼ିଶାର ଜଙ୍ଗଲ ଓ ବନ୍ୟପ୍ରାଣୀ ୨୧

୮ । ମଣିଷକୃତ ଜଙ୍ଗଲ ୨୫

୯ । ଜଙ୍ଗଲ ଓ ଜନସହଯୋଗ ଏବଂ ଜଙ୍ଗଲ ସୁରକ୍ଷା ଓ ଜାତୀୟ ବନନୀତି ୨୭


---

*Digitized by srujanika@gmail.com*

# ପୃଥିବୀର ଜଙ୍ଗଲ

ବହିରେ ପିଲାଏ କେତେ ବଣଜଙ୍ଗଲର କଥା ପଢ଼ନ୍ତି – ଅଗନା-ଅଗନି ବନସ୍ତରେ ଟୁଆଁଟିଏ ଟୁଇଁଟିଏ । ମୁନି ଋଷି ଜଙ୍ଗଲରେ ଆଶ୍ରମ କରି ତପସ୍ୟା କରନ୍ତି । ରାଜା ଜଙ୍ଗଲକୁ ପାରିଧିପାଇଁ ଯାଆନ୍ତି । ଏସବୁ ବଣଜଙ୍ଗଲର ଗପ । ସେହି ବଣଜଙ୍ଗଲ ବିଷୟରେ ଆଉଟିକିଏ ଅଧିକ ଜାଣିବା ।

ପୃଥିବୀସାରା ଯେଉଁଯେଉଁ ସ୍ଥାନମାନଙ୍କରେ ଜଙ୍ଗଲ ଅଛି, ସେଗୁଡ଼ିକର ଭୌଗୋଳିକ ଅବସ୍ଥିତି ନେଇ ପ୍ରଭେଦ ଅଛି । ଯେଉଁସବୁ କାରଣରୁ ବିଭିନ୍ନ ପ୍ରକାର ଜଙ୍ଗଲ ସୃଷ୍ଟି ହୁଏ, ସେଗୁଡ଼ିକ ହେଲା –

**ଜଳବାୟୁ** – ବିଷୁବରେଖାଠାରୁ ଉତ୍ତର ବା ଦକ୍ଷିଣ ଦିଗକୁ ଗତି କଲେ, ତାପମାତ୍ରା କମେ । ତାପମାତ୍ରା ଅନୁଯାୟୀ ପୃଥିବୀର ଜଙ୍ଗଲଗୁଡ଼ିକୁ ନିମ୍ନଲିଖିତ ଭାବରେ ବିଭକ୍ତ କରାଯାଏ –

| ଜଙ୍ଗଲ କିସମ | ବାର୍ଷିକ ହାରାହାରି ତାପମାତ୍ରା |
|---|---|
| (୧) ଆଲପାଇନ୍ | ୭ ଡିଗ୍ରୀ ସେଣ୍ଟିଗ୍ରେଡ୍‌ରୁ କମ୍ |
| (୨) ନାତିଶୀତୋଷ୍ଣ | ୭ ଡିଗ୍ରୀରୁ ୧୭ ଡିଗ୍ରୀ ସେଣ୍ଟିଗ୍ରେଡ୍ |
| (୩) ଉପକ୍ରାନ୍ତୀୟ | ୧୭ ଡିଗ୍ରୀରୁ ୨୫ ଡିଗ୍ରୀ ସେଣ୍ଟିଗ୍ରେଡ୍ |
| (୪) କ୍ରାନ୍ତୀୟ | ୨୫ ଡିଗ୍ରୀ ସେଣ୍ଟିଗ୍ରେଡ୍‌ରୁ ଅଧିକ |

**ମାଟି ଓ ପ୍ରାକୃତିକ ପରିସ୍ଥିତି** – ମାଟିର ପ୍ରକାର ନେଇ ଜଙ୍ଗଲର ପ୍ରକାର ମଧ୍ୟ ନିର୍ଣ୍ଣିତ ହୁଏ । ଭୂପୃଷ୍ଠଠାରୁ ଉଚ୍ଚତା ମଧ୍ୟ ଜଙ୍ଗଲର କିସମକୁ ପ୍ରଭାବିତ କରେ, ଯଥା – ପାହାଡ଼ିଆ ଅଞ୍ଚଳର ଉପତ୍ୟକାଗୁଡ଼ିକ ସାଧାରଣତଃ ଥଣ୍ଡା ରହେ ଏବଂ ସେଥିପାଇଁ ସେଠାରେ ଆର୍ଦ୍ର ଓ ଘନ ଉଦ୍ଭିଦ ଦେଖାଯାଏ । ହିମାଳୟ ପର୍ବତଶ୍ରେଣୀରେ ଉଚ୍ଚତା ଅନୁଯାୟୀ ଜଙ୍ଗଲର କିସମର ପ୍ରଭେଦ ହୁଏ ।

**ଐତିହାସିକ କାରଣ** – ପୃଥିବୀରେ ବିଭିନ୍ନ ଜଙ୍ଗଲର ଅବସ୍ଥିତିର ଐତିହାସିକ କାରଣ ଅଛି । ପୃଥିବୀରେ ଭୂ-ପରିବର୍ତ୍ତନ ଯୋଗୁଁ ବିଭିନ୍ନ ରକମର ଉଦ୍ଭିଦ ଦେଖାଯାଇଛି । ଅତୀତରେ ଭୂ-ସଂଚାଳନ ଯୋଗୁଁ ପୃଥିବୀପୃଷ୍ଠରେ ବଡ଼

Digitized by srujanika@gmail.com

ବଡ଼ ପାହାଡ଼ମାନ ଗଢ଼ିଉଠିଥିଲା । ପରବର୍ତ୍ତୀକାଳରେ ଭୂ-ସଂଚାଳନ ଯୋଗୁଁ ଅନେକ ଭୂଖଣ୍ଡ ପାଣିରେ ବୁଡ଼ିଗଲା । ଏହିସବୁ ଭୂ-ପରିବର୍ତ୍ତନ ସହ ଜଳବାୟୁ ମଧ୍ୟ ପରିବର୍ତ୍ତନ ହେଲା ଏବଂ ବିଭିନ୍ନ ଯୁଗରେ ବିଭିନ୍ନ ପ୍ରକାରର ଉଦ୍ଭିଦ ତଥା ବୃକ୍ଷରାଜି ସୃଷ୍ଟି ହେଲା । ତାହାର ଏକ ବିବରଣୀ ନିମ୍ନରେ ଦିଆଗଲା ।

**(୧) କାମ୍ବ୍ରିୟାନ୍-ସିଲୁରିୟାନ୍-ଡେଭୋନିୟାନ୍ –** ଏହା ପୃଥିବୀ ଗଠନ ସମୟର ତିନୋଟି କାଳ ବା ଯୁଗ । ପ୍ରଥମେ ସିଲୁରିୟାନ୍ ଯୁଗରେ ତନ୍ତୁଯୁକ୍ତ ଉଦ୍ଭିଦ ଦେଖାଗଲା । ସିଲୁରିୟାନ୍ ଯୁଗର ଶିଳାରେ ଆଦିମ ଲାଇକୋପସିଡ଼ ନାମକ ଉଦ୍ଭିଦର ଜୀବାଶ୍ମ ମିଳିଛି । ଡେଭୋନିୟାନ୍ ଯୁଗରେ ନିମ୍ନ ଭୂଭାଗରେ ଆନିଭରୋଫାଇଟନ୍ ନାମକ ଜଙ୍ଗଲ ଦେଖାଗଲା । ତା'ପରେ ଉଚ୍ଚ ସ୍ଥାନରେ ସ୍ପେନୋପସିଡ୍ ଓ ଟେରିଡୋସ୍ପର୍ମ ନାମକ ଜଙ୍ଗଲ ଦେଖାଗଲା ।

**(୨) କାର୍ବୋନିଫରସ୍ –** ଏହି ଯୁଗରେ ନିମ୍ନ ଭୂଭାଗରେ ଜଙ୍ଗଲମାନ ସୃଷ୍ଟି ହୋଇଥିଲା । ଏହି ଅଞ୍ଚଳରେ ପ୍ରବଳ ବର୍ଷା ହେଉଥିଲା ଏବଂ ବହୁ ଅଞ୍ଚଳ ସନ୍ତସନ୍ତିଆ ଥିଲା । ଏହି ନିମ୍ନ ଭୂଭାଗରେ ଅବସ୍ଥିତ ଜଙ୍ଗଲଗୁଡ଼ିକ ପୋତି ହୋଇପଡ଼ିଲା । ଏଥିରୁ କୋଇଲାଖଣିମାନ ସୃଷ୍ଟି ହେଲା ଯାହା ବର୍ତ୍ତମାନ ଭୂଗର୍ଭରେ ଦେଖାଯାଉଛି । ଏହି ସମୟରେ ଉଚ୍ଚ ଭୂଭାଗରେ ପାଇନ୍ ଜାତୀୟ ଜଙ୍ଗଲର ଆବିର୍ଭାବ ହେଲା ।

**(୩) ପର୍ମିୟାନ୍ ଯୁଗ –** ଏହି ସମୟରେ ପୃଥିବୀରେ ବରଫ ଯୁଗର ଆବିର୍ଭାବ ଯୋଗୁଁ ପୁରୁଣା ଉଦ୍ଭିଦ ଓ ଜଙ୍ଗଲସବୁର ସତ୍ତା ଲୋପପାଇଲା । ଏହାପରେ ଆଧୁନିକ ଯୁଗର ଫର୍ଣ୍ଣ, ସାଇକାଡ୍, ଗିନ୍‌ଗୋସ୍ ପାଇନ୍ ଜାତୀୟ ଜଙ୍ଗଲର ଆବିର୍ଭାବ ହେଲା ।

**(୪) ଟ୍ରାଏସିକ୍ – ଜୁରାସିକ୍ ଯୁଗ –** ପୃଥିବୀପୃଷ୍ଠରୁ ବରଫସବୁ ତରଳିଲାରୁ ସ୍ପିନୋପସିଡ୍ ଜାତୀୟ ଜଙ୍ଗଲ ପ୍ରଚୁର ଭାବରେ ସୃଷ୍ଟି ହେଲା ।

**(୫) କ୍ରେଟାସିୟସ୍ କାଳରୁ ବର୍ତ୍ତମାନ ଯୁଗ –** ଉଷ୍ମ ନାତିଶୀତୋଷ୍ଣ ଅଞ୍ଚଳରେ ଓସାରିଆ ପତ୍ରଯୁକ୍ତ ଉଦ୍ଭିଦର ଆବିର୍ଭାବ ହେଲା । କ୍ରେଟାସିୟସ୍ ଯୁଗର ଶେଷବେଳକୁ, ମ୍ୟାଗ୍ନୋ-ଲିପିୟସ୍ ଜାତୀୟ ଉଦ୍ଭିଦର ଆବିର୍ଭାବ ହେଲା । ଶେଷବେଳକୁ ଏସବୁରୁ ବିଭିନ୍ନ ଜାତୀୟ ଉଦ୍ଭିଦ ତଥା ବୃକ୍ଷରାଜି ସୃଷ୍ଟି ହେଲା ।

Digitized by srujanika@gmail.com

## ପୃଥିବୀରେ ଜଙ୍ଗଲର ବିଭାଗ –

ଆମ ପୃଥିବୀର ଭୂଭାଗର ଶତକଡ଼ା ୨୨ ଭାଗ ଜଙ୍ଗଲଦ୍ୱାରା ଆଚ୍ଛାଦିତ । ପୃଥିବୀର ବିଭିନ୍ନ ଦେଶରେ ଥିବା ଜଙ୍ଗଲର ପରିମାଣ ନିମ୍ନରେ ଦିଆଗଲା । ଏହା ଅନୁଯାୟୀ ଦକ୍ଷିଣ ଆମେରିକାରେ ସର୍ବାଧିକ ଜଙ୍ଗଲ ଅଛି ।

| ଦେଶର ନାମ | ସମୁଦାୟ ଜଙ୍ଗଲର ପରିମାଣ (ନିୟୁତ ହେକ୍ଟରରେ-୧୯୭୯) | ପୃଥିବୀର ସର୍ବମୋଟ ଜଙ୍ଗଲର ଶତକଡ଼ା ଭାଗ |
|---|---|---|
| ଉତ୍ତର ଆମେରିକା | ୭୫୦ | ୧୮ ଭାଗ |
| ଦକ୍ଷିଣ ଆମେରିକା | ୯୬୬ | ୨୩ ଭାଗ |
| ଆଫ୍ରିକା | ୭୧୦ | ୧୭ ଭାଗ |
| ୟୁରୋପ | ୧୪୪ | ୩ ଭାଗ |
| ଅବିଭକ୍ତ ରୁଷିଆ ବା ସୋଭିଏତ୍ ୟୁନିୟନ୍ | ୯୧୦ | ୨୧ ଭାଗ |
| ଏସିଆ | ୫୫୦ | ୧୩ ଭାଗ |
| ଓସେନିଆ | ୨୫୫ | ୫ ଭାଗ |
| ପୃଥିବୀର ମୋଟ ଜଙ୍ଗଲ | ୪୨୮୫ | ୧୦୦ ଭାଗ |

## ପୃଥିବୀରେ ଜଙ୍ଗଲର ବିଭିନ୍ନ କିସମ –

ପୃଥିବୀରେ ସାତ କିସମର ଜଙ୍ଗଲ ଦେଖାଯାଏ ଯାହାର ଏକ ସ୍ଥୂଳ ବର୍ଣ୍ଣନା ନିମ୍ନରେ ଦିଆଗଲା । ବିଷୁବ ରେଖା ପୃଥିବୀର ମଧ୍ୟଭାଗରେ କାଳ୍ପନିକ ଅଛି । ଏହାର ୨୩$\frac{୧}{୨}$ ଡିଗ୍ରୀ ଅକ୍ଷାଂଶରେ ଉତ୍ତର ଓ ଦକ୍ଷିଣରେ କର୍କଟକ୍ରାନ୍ତି ଓ ମକରକ୍ରାନ୍ତି କାଳ୍ପନିକ ରେଖାମାନ ଅଛି । କ୍ରାନ୍ତୀୟ ଜଙ୍ଗଲ ଏହି କ୍ରାନ୍ତି-ଅଞ୍ଚଳରେ ଅବସ୍ଥିତ ଅରଣ୍ୟକୁ ବୁଝାଏ । ପର୍ଣ୍ଣମୋଚୀ ଅର୍ଥ ଗଛର ପତ୍ର ଯେଉଁ ଅଞ୍ଚଳରେ ଝଡ଼ିପଡ଼େ । ପର୍ଣ୍ଣ ଅର୍ଥ ପତ୍ର ।

**(୧) ବୋରିଆଲ୍ ବା ଶୀତ ଅଞ୍ଚଳର ଜଙ୍ଗଲ** – ଏହା ଶୀତପ୍ରଧାନ ଦେଶ, ଯଥା – ନରୱେ, ସୁଇଡେନ୍, ଫିନ୍‌ଲାଣ୍ଡ, ସାଇବେରିଆ ଓ ଆଲାସ୍କା ଓ କାନାଡ଼ାରେ ଦେଖାଯାଏ । ଏହା ପୃଥିବୀର ସମୁଦାୟ ଜଙ୍ଗଲର ୨୪ ଭାଗ ମାତ୍ର । କିନ୍ତୁ ଏହି ଜଙ୍ଗଲଗୁଡ଼ିକ ବେଶୀ ପରିମାଣରେ ଆବାଦ କରାଯାଉଛି ।

Digitized by srujanika@gmail.com

**(୨) ନାତିଶୀତୋଷ୍ଣ ଜଙ୍ଗଲ** – ଏହି ଜଙ୍ଗଲଗୁଡ଼ିକରେ ବିଚ୍, ଓକ୍, ଓ୍ୟାଲ୍‌ନଟ୍, ଡଗଲାସ, ଫାର୍ ଓ ହେମଲକ୍ ପ୍ରଭୃତି ଗଛ ଦେଖାଯାଏ । ଏହି କିସମ ଜଙ୍ଗଲର ଆୟତନ ପୃଥିବୀର ଜଙ୍ଗଲର ଶତକଡ଼ା ୧୬ ଭାଗ ହୋଇଥିଲେ ମଧ୍ୟ, ସମୁଦାୟ ପୃଥିବୀର କାଠ ଉତ୍ପାଦନର ୪୫ ଭାଗ ଏହିଠାରୁ ମିଳେ । ଏହି ଜଙ୍ଗଲ ଆମେରିକା, ଅବିଭକ୍ତ ସୋଭିଏଟ୍ ରୁଷିଆ, ଜର୍ମାନୀ, ଫ୍ରାନ୍ସ, ସୁଇଜରଲାଣ୍ଡ, ଅଷ୍ଟ୍ରିଆ (ପଶ୍ଚିମ-ୟୁରୋପ)ରେ ଦେଖାଯାଏ । ଏହି-ସବୁ ଜଙ୍ଗଲ ବହୁଳ ଭାବରେ ଆବାଦ କରାଯାଇଛି ।

**(୩) ଉପକ୍ରାନ୍ତୀୟ ଆର୍ଦ୍ର ଜଙ୍ଗଲ ଏବଂ ବୃଷ୍ଟିବହୁଳ ନାତିଶୀତୋଷ୍ଣ ଜଙ୍ଗଲ** – ଏଗୁଡ଼ିକ ଉଷ୍ଣଥିବା ନାତିଶୀତୋଷ୍ଣ ଅଞ୍ଚଳ, ଯଥା – ଚୀନ୍, କୋରିଆ, ଦକ୍ଷିଣ ଜାପାନ, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ, ଦକ୍ଷିଣ ଆଫ୍ରିକା, ଦକ୍ଷିଣ ଆମେରିକା ଓ ପୂର୍ବ-ଆମେରିକାର କିଛି ଅଂଶରେ ଦେଖାଯାଏ । ଏ କିସମ ଜଙ୍ଗଲ ପୃଥିବୀର ଜଙ୍ଗଲର ମାତ୍ର ଶତକଡ଼ା ଏକଭାଗ । ଏହିପ୍ରକାର ଜଙ୍ଗଲରେ ଉଭୟ ନରମ କାଠ (ପାଇନ୍) ଓ କଠିନ କାଠ (ଓକ୍ ଓ ଇଉକାଲିପଟାସ୍) ଦେଖାଯାଏ ।

**(୪) କ୍ରାନ୍ତୀୟ ଅଂଚଳର ବୃଷ୍ଟିବହୁଳ ଜଙ୍ଗଲ** – ଏ ପ୍ରକାର ଜଙ୍ଗଲ ଗ୍ରୀଷ୍ମମଣ୍ଡଳର ବୃଷ୍ଟି-ବହୁଳ ଅଂଚଳରେ ଦେଖାଯାଏ । ଏହି ଜଙ୍ଗଲ ଦକ୍ଷିଣ-ଆମେରିକା, ଆଫ୍ରିକା ଓ ଦକ୍ଷିଣ-ପୂର୍ବ ଏସିଆରେ ଦେଖାଯାଏ । ଏହିପ୍ରକାର ଜଙ୍ଗଲରେ ବହୁ ଜାତିର ଗଛ ଅଛି । ସେଗୁଡ଼ିକ ମଧ୍ୟରେ ମେହଗାନି, ସେଡାର, ଲିମ୍ବା, ଗ୍ରୀନ୍‌ହାର୍ଟ ଇତ୍ୟାଦି ପ୍ରଧାନ । ଆୟତନରେ ଏହି ପ୍ରକାରର ଜଙ୍ଗଲ ପୃଥିବୀର ମୋଟ ଜଙ୍ଗଲର ଶତକଡ଼ା ୨୦ ଭାଗ, କିନ୍ତୁ ଏହାର ଶତକଡ଼ା ୨ଭାଗ ମାତ୍ର ଶିଳ୍ପପାଇଁ ବ୍ୟବହୃତ ହୁଏ ।

**(୫) ଆର୍ଦ୍ର ପର୍ଣ୍ଣମୋଚୀ ଜଙ୍ଗଲ** – ଏହି ଜଙ୍ଗଲରେ ଶୀତଦିନରେ ପତ୍ର ଝଡ଼େ । ଏହି ଜାତୀୟ ଜଙ୍ଗଲଗୁଡ଼ିକରେ ମୂଲ୍ୟବାନ ଶାଳ ଓ ସାଗୁଆନ (ଟିକ୍) ଗଛ ଦେଖାଯାଏ । ଏହିପ୍ରକାରର ଜଙ୍ଗଲ ଭାରତବର୍ଷର କେତେକ ଅଞ୍ଚଳ, ବର୍ମା, ଥାଇଲାଣ୍ଡ, ଇଣ୍ଡୋନେସିଆ, ଇଣ୍ଡୋଚୀନ୍, ଦକ୍ଷିଣପୂର୍ବ ଚୀନ୍ ଓ ଆଫ୍ରିକାରେ ଦେଖାଯାଏ । ଏହିପ୍ରକାର ଜଙ୍ଗଲ ପୃଥିବୀର ମୋଟ ଜଙ୍ଗଲର ଶତକଡ଼ା ୧୧ ଭାଗ ।

Digitized by srujanika@gmail.com

**(୬) ଶୁଷ୍କ ପର୍ଣ୍ଣମୋଚୀ ଜଙ୍ଗଲ –** ଏହା ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ବହୁଳ ଭାବରେ ଦେଖାଯାଏ । ଏହା ବିଶେଷତଃ ଭାରତବର୍ଷ, ଥାଇଲାଣ୍ଡ, ଇଣ୍ଡୋଚୀନ୍, ତାନ୍‌ଜାନିଆ, ଜାମ୍ବିଆ, ପଶ୍ଚିମ ଆଫ୍ରିକାରେ ଦେଖାଯାଏ । ଏହି ଜଙ୍ଗଲରେ ଗଛଗୁଡ଼ିକ ଛୋଟ ହୁଏ । ଏହି ଜଙ୍ଗଲର କାଠ ସ୍ଥାନୀୟ ଲୋକେ ସାଧାରଣତଃ ଜାଳେଣି ଓ ଗୋଖାଦ୍ୟ ପାଇଁ ବ୍ୟବହାର କରନ୍ତି । ଏପ୍ରକାର ଜଙ୍ଗଲ ପୃଥିବୀର ଜଙ୍ଗଲ ପରିମାଣର ଶତକଡ଼ା ୨୧ ଭାଗ ।

**(୭) ଉପକ୍ରାନ୍ତୀୟ ଶୁଷ୍କ ଜଙ୍ଗଲ –** ଏହିପ୍ରକାର ଜଙ୍ଗଲରେ ଗଛଗୁଡ଼ିକ ଛୋଟ ଛୋଟ ହୁଏ । ଏହା ଜାଳେଣି କାଠ ଓ ଗୋଖାଦ୍ୟ ପାଇଁ ବ୍ୟବହୃତ ହୁଏ । ଏହି ଜଙ୍ଗଲ ସାଧାରଣତଃ ୟୁରୋପର ଇଟାଲୀ, ସ୍ପେନ୍, ଗ୍ରୀସ୍, ପର୍ତ୍ତୁଗାଲ୍ ଏବଂ ତୁର୍କୀ, ପାକିସ୍ଥାନ ଓ ଭାରତରେ ଦେଖାଯାଏ । ଯଦିଓ ଏହି କିସମ ଜଙ୍ଗଲ ପୃଥିବୀର ମୋଟ ଅରଣ୍ୟର ଶତକଡ଼ା ୭ ଭାଗ, ତେବେ ବି ବ୍ୟାବସାୟିକ ଦୃଷ୍ଟିରୁ ଏହି ପ୍ରକାର ଜଙ୍ଗଲ ଲାଭଜନକ ନୁହେଁ ।

ପୃଥିବୀର ବିଭିନ୍ନ ପ୍ରକାର ଜଙ୍ଗଲରେ ବହୁ ସଂଖ୍ୟକ ଏବଂ ବହୁ ପ୍ରକାରର ବନ୍ୟପ୍ରାଣୀ ଦେଖାଯାନ୍ତି । ପୃଥିବୀରେ କାଠର ବହୁଳ ବ୍ୟବହାର ଯୋଗୁଁ ଜଙ୍ଗଲସବୁ ନଷ୍ଟ ହେଉଛି । କାଠରୁ ଗଡ଼ି, ପ୍ଲାଇଉଡ୍ ଓ ଭିନିଅର୍ ଆଦି କାଷ୍ଠ ଦ୍ରବ୍ୟ ପ୍ରସ୍ତୁତ ହୁଏ । ନରମ କନିଫେରସ୍ କାଠ ଶିଳ୍ପପାଇଁ ବିଶେଷ ଭାବରେ ବ୍ୟବହୃତ ହୁଏ । କଠିନ କାଠ ସାଧାରଣତଃ ଜାଳେଣିପାଇଁ ବ୍ୟବହୃତ ହୁଏ । କାଠରୁ କାଗଜମଣ୍ଡ ଓ କାଗଜ ଉତ୍ପାଦିତ ହୁଏ ।



Digitized by srujanika@gmail.com

# ଭାରତର ଜଙ୍ଗଲ ସଂପଦ

ପ୍ରାକୃତିକ ପରିବେଶରେ ଜଙ୍ଗଲ ସୃଷ୍ଟି ହୋଇଥାଏ ଏବଂ ଜଙ୍ଗଲରେ ପ୍ରାକୃତିକ ଉଦ୍ଭିଦ ଦେଖାଯାଏ । ବିଭିନ୍ନ ଅଞ୍ଚଳର ଭୂ-ପ୍ରକୃତି, ବୃଷ୍ଟିପାତ ଓ ଜଳବାୟୁ ସେହି ଅଞ୍ଚଳର ପ୍ରାକୃତିକ ଉଦ୍ଭିଦକୁ ନିୟନ୍ତ୍ରଣ କରିଥାଏ । ଭାରତବର୍ଷ ଉତ୍ତର ଗୋଲାର୍ଦ୍ଧରେ ଅବସ୍ଥିତ । ଏଠାରେ ବହୁ ପ୍ରକାରର ଜଙ୍ଗଲ ଦେଖାଯାଏ । ହିମାଳୟର ଆଲପାଇନ୍ ଜଙ୍ଗଲଠାରୁ ଆରମ୍ଭକରି ରାଜସ୍ଥାନ ମରୁଭୂମିର ଗୁଳ୍ମ ପର୍ଯ୍ୟନ୍ତ ଉଦ୍ଭିଦ ଭାରତରେ ଦେଖାଯାଏ । ଭାରତବର୍ଷକୁ ତିନୋଟି ପ୍ରାକୃତିକ ବିଭାଗରେ ବିଭକ୍ତ କରାଯାଏ ।

**(୧) ହିମାଳୟ ଅଞ୍ଚଳ** – ଏଥିରେ ହିମାଳୟ ପର୍ବତମାଳା ଓ ଶିବାଲିକ ପର୍ବତମାଳା ଅଞ୍ଚଳ ଅନ୍ତର୍ଭୁକ୍ତ ।

**(୨) ସୈନ୍ଧବ-ଗାଙ୍ଗେୟ ଉପତ୍ୟକା** – ଏଥିରେ ସିନ୍ଧୁ ଓ ଗଙ୍ଗାନଦୀ ଓ ତା'ର ଉପନଦୀଗୁଡ଼ିକ ପ୍ରବାହିତ ହୁଏ ।

**(୩) ମାଳ ଅଞ୍ଚଳ** – ଆରାବଲ୍ଲୀ ପର୍ବତର ଦକ୍ଷିଣରେ ଏହା ଅବସ୍ଥିତ ।

ଜଙ୍ଗଲ ଜନସାଧାରଣଙ୍କ ସାମାଜିକ ଓ ଅର୍ଥନୈତିକ ଉନ୍ନୟନରେ ସାହାଯ୍ୟକାରୀ ହୋଇଥାଏ । ଜଙ୍ଗଲ ମଧ୍ୟ ପରିବେଶକୁ ସୁସ୍ଥ ଓ ନିର୍ମଳ ରଖେ, କାରଣ ଗଛଗୁଡ଼ିକ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ବାଷ୍ପ ନେଇ ଖାଦ୍ୟ ପ୍ରସ୍ତୁତ କରନ୍ତି ଓ ଅମ୍ଳଜାନବାଷ୍ପ ବାୟୁମଣ୍ଡଳକକୁ ଛାଡ଼ନ୍ତି । ଏହି ଅମ୍ଳଜାନ ମଣିଷର ନିଶ୍ୱାସ ପାଇଁ ଅପରିହାର୍ଯ୍ୟ ।

ଆଜିକାଲି ମହାକାଶରେ ଉପଗ୍ରହ ସାହାଯ୍ୟରେ ଜଙ୍ଗଲର ଆୟତନ ସର୍ବେକ୍ଷଣ କରାଯାଉଛି । ୧୯୯୫ ମସିହାର ତଥ୍ୟ ଅନୁଯାୟୀ ଭାରତରେ ଜଙ୍ଗଲର ଆୟତନ ଆସ୍ତେ ଆସ୍ତେ କମୁଛି । ଦେଶର ସମୁଦାୟ ଭୌଗୋଳିକ ଆୟତନ ପ୍ରାୟ ୩୩ ଲକ୍ଷ ବର୍ଗ କିଲୋମିଟର । ଏଥିରୁ ଶତକଡ଼ା ୭୮ ଭାଗ

Digitized by srujanika@gmail.com

ବା ୨୬ ଲକ୍ଷ ହେକ୍ଟର ଅଣଜଙ୍ଗଲ ଜମି । ସରକାରୀ ରେକର୍ଡ ଅନୁଯାୟୀ ଜଙ୍ଗଲ ଜମିର ଆୟତନ ୭.୬୫ ଲକ୍ଷ ବର୍ଗ କିଲୋମିଟର ଥିବାବେଳେ, ପ୍ରକୃତ ଜଙ୍ଗଲ ୬.୩୯ ଲକ୍ଷ ବର୍ଗ କିଲୋମିଟରରେ ଅଛି । ଏହାର ବିଭାଗ ଏହିପରି –

| | |
|---|---|
| ଘନ ଜଙ୍ଗଲ (ସାନ୍ଦ୍ରତା ୪୦ରୁ ଅଧିକ) | – ୩.୮୫ ଲକ୍ଷ ବର୍ଗ କିଲୋମିଟର |
| ଖୋଲା ଜଙ୍ଗଲ (ସାନ୍ଦ୍ରତା ୧୦ରୁ ୪୦ ମଧ୍ୟରେ) | – ୨.୪୯ ଲକ୍ଷ ବର୍ଗ କିଲୋମିଟର |
| ହେନ୍ତାଳ ବନ | – ୪୫୩୩ ବର୍ଗ କିଲୋମିଟର |
| | ସମୁଦାୟ : ୬.୩୯ ଲକ୍ଷ ବର୍ଗ କିଲୋମିଟର |

ଏହା ଭାରତର ଭୌଗୋଳିକ ଆୟତନର ଶତକଡ଼ା ୧୯ ଭାଗ ମାତ୍ର । ଏସବୁ ବ୍ୟତୀତ ଦେଶରେ ୬୦ ହଜାର ବର୍ଗ କିଲୋମିଟରରେ ଝାଡ଼ି ଜଙ୍ଗଲ ଅଛି ।

**ଆମ ଦେଶରେ ଥିବା ମୁଖ୍ୟ ଜଙ୍ଗଲଗୁଡ଼ିକର ପ୍ରକାର ଏହିପରି –**

**(୧) କ୍ରାନ୍ତୀୟ ଆର୍ଦ୍ର ଚିରହରିତ୍ ଅରଣ୍ୟ** – ଏହା ଉପର ଆସାମର କାଚାରଠାରୁ ଆଣ୍ଡାମାନ୍ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ଦେଖାଯାଏ ।

**(୨) କ୍ରାନ୍ତୀୟ ଅର୍ଦ୍ଧ ଚିରହରିତ ଅରଣ୍ୟ** – ଏହା ପଶ୍ଚିମ ଉପକୂଳରେ, ଆସାମ, ଅରୁଣାଚଳ ପ୍ରଦେଶ ଓ ଓଡ଼ିଶାରେ ଦେଖାଯାଏ ।

**(୩) କ୍ରାନ୍ତୀୟ ଆର୍ଦ୍ର ପର୍ଣ୍ଣମୋଚୀ ଜଙ୍ଗଲ** – ଏହା ଆଣ୍ଡାମାନ ଦ୍ୱୀପପୁଞ୍ଜ, ଉତ୍ତର ପ୍ରଦେଶର କିଛି ଅଞ୍ଚଳ, ମଧ୍ୟପ୍ରଦେଶ, ଗୁଜୁରାଟ, ମହାରାଷ୍ଟ୍ର, କର୍ଣ୍ଣାଟକ ଓ କେରଳରେ ଦେଖାଯାଏ ।

**(୪) କୁଆରିଆ ଅରଣ୍ୟ** – ଏହା ସମଗ୍ର ଉପକୂଳ ଅଞ୍ଚଳ ଓ ମୁଖ୍ୟ ନଦୀଗୁଡ଼ିକର ସମୁଦ୍ରସହ ମିଳନସ୍ଥଳରେ ତ୍ରିକୋଣ ଭୂମିରେ ଦେଖାଯାଏ ।

**(୫) କ୍ରାନ୍ତୀୟ ଶୁଷ୍କ ପର୍ଣ୍ଣମୋଚୀ ଅରଣ୍ୟ** – ଏହା ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ କନ୍ୟାକୁମାରୀ ଯାଏଁ ଦେଖାଯାଏ ।

**(୬) କ୍ରାନ୍ତୀୟ କଣ୍ଟାବନ ଓ ଗୁଳ୍ମ ଜଙ୍ଗଲ** – ଏହା ପଞ୍ଜାବ, ରାଜସ୍ଥାନ ଓ ଦେଶର ଦାକ୍ଷିଣାତ୍ୟ ମାଳ ଅଞ୍ଚଳରେ ଦେଖାଯାଏ ।

Digitized by srujanika@gmail.com

(୭) କ୍ରାନ୍ତୀୟ ଶୁଷ୍କ ଚିରହରିତ ଅରଣ୍ୟ –ଏହା କେବଳ କର୍ଣ୍ଣାଟକର ଉପକୂଳ ଅଞ୍ଚଳରେ ଦେଖାଯାଏ ।

ଏସବୁ ବ୍ୟତୀତ ହିମାଳୟ ଅଞ୍ଚଳରେ ବହୁ ରକମର ପ୍ରାକୃତିକ ଉଦ୍ଭିଦ ଦେଖାଯାଏ । ହିମାଳୟର ନିମ୍ନ ଅଞ୍ଚଳରେ ପାର୍ବତ୍ୟ ଅରଣ୍ୟ ଦେଖାଯାଏ । ହିମାଳୟ ଅଞ୍ଚଳରେ ୧୦୦୦ରୁ ୧୮୦୦ ମିଟର ଉଚ୍ଚ ଅଞ୍ଚଳରେ ପାଇନ୍ ଜଙ୍ଗଲ ଦେଖାଯାଏ । ତରାଇ, ଶିବାଲିକ୍ ଅଞ୍ଚଳ ଓ ପଶ୍ଚିମ ହିମାଳୟରେ ୧୦୦୦ ମିଟର ଯାଏ ଉପକ୍ରାନ୍ତୀୟ ଶୁଷ୍କ ଅର୍ଦ୍ଧ-ଚିରହରିତ୍ ଅରଣ୍ୟ ଦେଖାଯାଏ । ପୂର୍ବ ହିମାଳୟରେ ପାର୍ବତୀୟ ଆର୍ଦ୍ର ନାତିଶୀତୋଷ୍ଣ ଜଙ୍ଗଲ ଦେଖାଯାଏ । ହିମାଳୟର ୧୫୦୦ରୁ ୩୦୦୦ ମିଟର ଯାଏ ଆର୍ଦ୍ର ନାତିଶୀ-ତୋଷ୍ଣ ଜଙ୍ଗଲ ଦେଖାଯାଏ ଏସବୁ ଅଞ୍ଚଳ ହେଲା – କାଶ୍ମୀର, ହିମାଚଳ ପ୍ରଦେଶ, ଗଡ଼ଓ୍ୱାଲ୍, କୁମାୟୁନ୍, ଦାର୍ଜିଲିଂ ଓ ଅରୁଣାଚଳ ପ୍ରଦେଶ । ହିମାଳୟର ଶୁଷ୍କ ନାତିଶୀତୋଷ୍ଣ ଜଙ୍ଗଲ ସାଧାରଣତଃ ଲାଦାଖ୍, ଲାହୁଲ୍-ସ୍ପିତି, କୁମାୟୁନ୍ ଓ ସିକିମ୍‌ରେ ଦେଖାଯାଏ । ହିମାଳୟରେ ୩୦୦୦ ମିଟରରୁ ଅଧିକ ଉଚ୍ଚ ଅଞ୍ଚଳରେ ଆଲ୍‌ପାଇନ୍ ଜଙ୍ଗଲ ଦେଖାଯାଏ ।

ଦେଶର ଜଙ୍ଗଲ ଉପରେ ନିର୍ଭର କରି କରତକଳ ଓ କାଗଜକଳମାନ ପ୍ରତିଷ୍ଠିତ ହୋଇଛି । କରତକଳଗୁଡ଼ିକ ବାର୍ଷିକ ୧୫ ନିୟୁତ କିଉବିକ୍ ମିଟର କାଠ କାଟନ୍ତି । କାଗଜ କଳମାନ ପ୍ରତିବର୍ଷ ୧୨ ନିୟୁତ ଟନ୍ କାଗଜମଣ୍ଡ ପ୍ରସ୍ତୁତ କରନ୍ତି । ଏହାଛଡ଼ା ଜଙ୍ଗଲରୁ ପ୍ରତିବର୍ଷ ୨୫୦ ନିୟୁତ କ୍ୟୁବିକ୍ ମିଟର କାଠ ଘରୋଇ ଜାଳେଣିପାଇଁ ବ୍ୟବହୃତ ହୁଏ । ଏହାଛଡ଼ା ଜଙ୍ଗଲରେ ବହୁ ରକମର ଲଘୁ ବନଜାତ ଦ୍ରବ୍ୟ ଅଛି ଯାହା ଅଠା, ତନ୍ତୁ, ଚମଡ଼ାକଷ ପାଇଁ, ଔଷଧ ପାଇଁ ଓ ସୁବାସିତ ତେଲ ପ୍ରସ୍ତୁତି ପାଇଁ ବ୍ୟବହୃତ ହୁଏ ।

ଭାରତର ଅରଣ୍ୟମାନଂକରେ ଅନେକ ପ୍ରକାରର ବନ୍ୟପ୍ରାଣୀ ଦେଖା-ଯା'ନ୍ତି । ସେଗୁଡ଼ିକ ମଧ୍ୟରେ ହାତୀ, ବାଘ, ସିଂହ, ଭାଲୁ, ଗଣ୍ଡା, ବାରହା, ଗୟଳ (ବନ୍ୟ ମହିଷ) ଇତ୍ୟାଦି ପ୍ରଧାନ ।

ପଶ୍ଚିମବଙ୍ଗର ସୁନ୍ଦରବନ ଅଞ୍ଚଳ ମହାବଳ ବାଘମାନଙ୍କର ବାସସ୍ଥଳୀ ।

ଗୁଜରାଟର ଗିର୍‌ଅରଣ୍ୟରେ ସିଂହ ଦେଖାଯାଏ ।

ଆସାମ ଓ ଉତ୍ତରବଙ୍ଗର ଘଞ୍ଚ ସନ୍ତସନ୍ତିଆ ଅରଣ୍ୟରେ ଗଣ୍ଡା ବାସ-କରନ୍ତି । ଭାରତୀୟ ଗଣ୍ଡା ପୃଥିବୀର ଗଣ୍ଡାମାନଙ୍କ ମଧ୍ୟରେ ବୃହତ୍ତମ ;

Digitized by srujanika@gmail.com

ଓଡ଼ିଶା, ମଧ୍ୟପ୍ରଦେଶ ଓ କର୍ଣ୍ଣାଟକର ଅରଣ୍ୟ, ଛୋଟ ନାଗପୁର ମାଳଭୂମି ଓ ହିମାଳୟର ପାଦଦେଶ ଅଞ୍ଚଳରେ ହାତୀ ଓ ବାଘ ଦେଖାଯାନ୍ତି ।

ଏହା ବ୍ୟତୀତ ଚିତାବାଘ, ଗଧିଆ, ହରିଣ, ସମ୍ବର ପ୍ରଭୃତି ଜନ୍ତୁ ଭାରତର ପ୍ରାୟ ସବୁ ଜଙ୍ଗଲରେ ଦେଖାଯାନ୍ତି ।

କାଶ୍ମୀରରେ ଆଇବେକ୍ସ ଜାତୀୟ ଦୀର୍ଘଲୋମବିଶିଷ୍ଟ ବନ୍ୟ ଛାଗଳ ଦେଖାଯାନ୍ତି । ଭାରତ-ନେପାଳ ସୀମାର ହିମାଳୟ ପାର୍ବତ୍ୟ ଅଞ୍ଚଳରେ ଚମରୀ ଗାଈ ଓ କସ୍ତୁରୀ ମୃଗ ଦେଖାଯାନ୍ତି ।

ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ ଓ ଓଡ଼ିଶାରେ ନୀଳଗାଈ ଦେଖାଯାନ୍ତି । ଏହାଛଡ଼ା ମାଙ୍କଡ଼, ଠେକୁଆ, କୋକିଶିଆଳି ଆଦି ବନ୍ୟପ୍ରାଣୀ ପ୍ରାୟ ସବୁ ଅରଣ୍ୟରେ ଥାଆନ୍ତି ।

ଭାରତର ଅରଣ୍ୟମାନଙ୍କରେ ମୟୂର, ଶୁଆ, ଶାରୀ, କୋଚିଲାଖାଇ, ଚିଲ, ଛଞ୍ଚାଣ ଆଦି ପକ୍ଷୀ ଅଛନ୍ତି । ନଦୀ ଓ ହ୍ରଦମାନଙ୍କରେ ହଂସ, ହଂସରାଳି ଇତ୍ୟାଦି ପକ୍ଷୀ ଦେଖାଯାନ୍ତି । ବାଘ ଆମର ଜାତୀୟ ପଶୁ ଓ ମୟୂର ଆମର ଜାତୀୟ ପକ୍ଷୀ ।

ଭାରତର ଅରଣ୍ୟ କ୍ଷେତ୍ର କ୍ରମଶଃ ହ୍ରାସପାଉଥିବାରୁ ଓ ଲୋକେ ପଶୁ ପକ୍ଷୀ ଶିକାର କରୁଥିବାରୁ ସେମାନଙ୍କର ସଂଖ୍ୟା ବହୁ ପରିମାଣରେ କମୁଛି । ବନ୍ୟପ୍ରାଣୀଙ୍କର ସୁରକ୍ଷାପାଇଁ ୧୯୭୨ରେ ବନ୍ୟପ୍ରାଣୀ ସଂରକ୍ଷଣ ଆଇନ ପ୍ରଣୀତ ହୋଇଛି । ବନ୍ୟପ୍ରାଣୀଙ୍କର ସୁରକ୍ଷାପାଇଁ ଦେଶରେ ୮୦ଟି ଜାତୀୟ ପାର୍କ ଓ ୪୪୧ଟି ଅଭୟାରଣ୍ୟ ସୃଷ୍ଟି କରାଯାଇଛି । ମାତ୍ର ଏଗୁଡ଼ିକର କ୍ଷେତ୍ରଫଳ ମୋଟ୍ ଦେଢ଼ଲକ୍ଷ ବର୍ଗକିଲୋମିଟର, ଯାହା ଦେଶର ଭୌଗୋଳିକ ଆୟତନର ମାତ୍ର ୫ ଭାଗ ।



Digitized by srujanika@gmail.com

# ଓଡ଼ିଶାର ଜଙ୍ଗଲ ଓ ବନ୍ୟସମ୍ପଦ

ଆଦିମ ଯୁଗରେ ଓଡ଼ିଶା ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ମାତ୍ର କ୍ରମଶଃ ଜନସଂଖ୍ୟା ବୃଦ୍ଧି ହେବାରୁ କୃଷି, ଜନବସତି, ଶିଳ୍ପ ଓ ଗମନାଗମନ ପଥ ପ୍ରଭୃତି ନିମିତ୍ତ ଅଧିକରୁ ଅଧିକ ଭୂମି ଆବଶ୍ୟକ ହେଲା । ମଣିଷର ବିଭିନ୍ନ ବ୍ୟବହାର ପାଇଁ ଗଛର କାଠ ଆବଶ୍ୟକ ହେଲା । ଫଳରେ ମନୁଷ୍ୟ ଅରଣ୍ୟକୁ କାଟି ସଫାକରି ନିଜର ଆବଶ୍ୟକତା ପୂରଣପାଇଁ ଭୂମିକୁ ଉପଯୋଗ କଲା । ସେଥିପାଇଁ ଅରଣ୍ୟର ଆୟତନ କ୍ରମଶଃ ହ୍ରାସପାଉଅଛି ।

ଓଡ଼ିଶା ରାଜ୍ୟର ସମଗ୍ର ଆୟତନ ୧.୫ ଲକ୍ଷ ବର୍ଗ କିଲୋମିଟର । ଏହାର ଶତକଡ଼ା ୩୬ ଭାଗ, ଅର୍ଥାତ୍ ୫୭,୧୮୪ ବର୍ଗ କିଲୋମିଟର ରେକର୍ଡରେ ଜଙ୍ଗଲ ବୋଲି ପଞ୍ଜିକୃତ ହୋଇଅଛି । କିନ୍ତୁ ପ୍ରକୃତ ଜଙ୍ଗଲ ଥିବା ଜମିର ଆୟତନ ୪୭,୧୦୭ ବର୍ଗ କିଲୋମିଟର । ଏହା ରାଜ୍ୟର ସମଗ୍ର ଆୟତନର ଶତକଡ଼ା ୩୦ ଭାଗ । ଓଡ଼ିଶାରେ ରେକର୍ଡଭୁକ୍ତ ବିଭିନ୍ନ ଜଙ୍ଗଲର କିସମ ଏହିପରି –

| | | |
|---|---|---|
| ସଂରକ୍ଷିତ ଜଙ୍ଗଲ | – | ୨୭,୦୮୭ ବର୍ଗ କିଲୋମିଟର |
| ରକ୍ଷିତ ଜଙ୍ଗଲ | – | ୩୦,୦୮୦ ବର୍ଗ କିଲୋମିଟର |
| ଅନ୍ୟାନ୍ୟ ପ୍ରକାର ଜଙ୍ଗଲ | – | ୧୭ ବର୍ଗ କିଲୋମିଟର |
| ସମୁଦାୟ ରେକର୍ଡଭୁକ୍ତ ଜଙ୍ଗଲ ଜମି | | ୫୭,୧୮୪ ବର୍ଗ କିଲୋମିଟର |

ଏଥି ମଧ୍ୟରୁ ପ୍ରକୃତରେ ୪୭,୧୦୭ ବର୍ଗ କିଲୋମିଟରରେ ଜଙ୍ଗଲ ଅଛି ଯାହାର ସାନ୍ଦ୍ରତା ନିମ୍ନପ୍ରକାର –

| | | |
|---|---|---|
| ଘଞ୍ଚ ଜଙ୍ଗଲ (ସାନ୍ଦ୍ରତା ଶତକଡ଼ା ୪୦ ଭାଗରୁ ଅଧିକ) | – | ୨୭,୧୬୩ ବର୍ଗ କିଲୋମିଟର |
| ପଦା ଜଙ୍ଗଲ (ସାନ୍ଦ୍ରତା ଶତକଡ଼ା ୧୦ରୁ ୪୦ ଭାଗ) | – | ୧୯,୭୪୯ ବର୍ଗ କିଲୋମିଟର |
| ହେନ୍ତାଳ ବନ | | ୧୯୫ ବର୍ଗ କିଲୋମିଟର |
| ସମୁଦାୟ ପ୍ରକୃତ ଜଙ୍ଗଲ ଥିବା ଭୂମି | | ୪୭,୧୦୭ ବର୍ଗ କିଲୋମିଟର |

Digitized by srujanika@gmail.com

୧୯୩୬ ମସିହା ଏପ୍ରିଲ୍ ପହିଲାରେ ଓଡ଼ିଶା ବିହାରରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ପ୍ରଦେଶ ହେଲା । ଏହି ନୂତନ ପ୍ରଦେଶରେ ଛଅଟି ଜିଲ୍ଲା ଥିଲା – ମାନ୍ଦ୍ରାଜରୁ ଗଞ୍ଜାମ ଓ କୋରାପୁଟ ଜିଲ୍ଲା, ମଧ୍ୟପ୍ରଦେଶରୁ ସମ୍ବଲପୁର ଜିଲ୍ଲା ଓ ବଂଗଳାରୁ ବାଲେଶ୍ୱର, କଟକ, ପୁରୀ ଜିଲ୍ଲା ଆସିଲା । ଏହା ବ୍ୟତୀତ ଓଡ଼ିଆ ଭାଷାଭାଷୀ ବହୁ ଗଡ଼ଜାତ ରାଜ୍ୟ ଥିଲା, ଯେଉଁଥିରେ ଦେଶୀୟ ରାଜାମାନେ ରାଜୁତି କରୁଥିଲେ ।

ଗଡ଼ଜାତ ଅଂଚଳରେ ଭଲ ଘଂଚ ଜଂଗଲମାନ ଥିଲା । ରାଜାମାନେ ବନ ଅଫିସର ରଖି ଜଂଗଲର ତତ୍ତ୍ୱାବଧାନ କରୁଥିଲେ । ଏହାଛଡ଼ା ଭାରତ ସରକାରଂକର ଜଣେ ବନବିଭାଗୀୟ ପରାମର୍ଶଦାତା ଅଫିସର ସମ୍ବଲପୁର ସଦର ମହକୁମାରେ ରହି ଇଷ୍ଟର୍ଣ୍ଣ ଷ୍ଟେଟ୍ ଏଜେନ୍‌ସିର ରାଜାମାନଂକୁ ଜଂଗଲ ବିଷୟରେ ପରାମର୍ଶ ଦେଉଥିଲେ । ଡକ୍ଟର ଏଚ୍.ଏଫ୍. ମୁନିଙ୍କ ନାମ ଏଥିପାଇଁ ଉଲ୍ଲେଖଯୋଗ୍ୟ ।

ସ୍ୱାଧୀନତା ପରେ ୧୯୪୭ ମସିହାରେ ଏସବୁ ୨୫ଟି ଗଡ଼ଜାତ ରାଜ୍ୟ ଓଡ଼ିଶାରେ ମିଶିଲା । ତତ୍‌ସଂଗେ ଗଡ଼ଜାତ ଜଂଗଲ ସବୁ ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ ହେଲା । ଗଡ଼ଜାତକୁ ଛାଡ଼ି ଅନ୍ୟାନ୍ୟ ଅଂଚଳରେ ଜମିଦାରମାନେ ଥିଲେ । ଏମାନଂକ ଜମିଦାରୀରେ ବହୁତ ଭଲ ଜଂଗଲ ଥିଲା । ୧୯୫୨ରେ ଜମିଦାରୀ ଉଚ୍ଛେଦ ପରେ ଏହିସବୁ ଜଂଗଲ ଓଡ଼ିଶା ସରକାରଂକ ଅଧୀନକୁ ଆସିଲା । ତେଣୁ ସ୍ୱାଧୀନତା ପରେ ଓଡ଼ିଶାର ଜଂଗଲର ଆୟତନ ଗଡ଼ଜାତ ଜଂଗଲ ମିଶିବା ଯୋଗୁଁ ୭,୪୪୩ ବର୍ଗ କିଲୋମିଟରରୁ ୨୬,୩୩୨ ବର୍ଗ କିଲୋମିଟରକୁ ବୃଦ୍ଧି ପାଇଲା । ଜମିଦାରୀ ଉଚ୍ଛେଦପରେ ସେସବୁ ଅଂଚଳର ୨୦,୧୨୪ ବର୍ଗ କିଲୋମିଟର ଅଧିକ ଜଂଗଲ ଆସିଲା ।

ସଂରକ୍ଷିତ ବା ରିଜର୍ଭ ଜଂଗଲ ଛଡ଼ା ଅନ୍ୟସବୁ ଜଂଗଲରେ ସ୍ଥାନୀୟ ଲୋକମାନଂକର ଗଛ ଓ କାଠ ଉପରେ ଅଧିକାର ଥିଲା । ପ୍ରଜାମାନେ ସରକାରଂକୁ ନିସ୍ତାର ସେସ୍ ବା ଜଂଗଲ ରାଜସ୍ୱ ଦେଇ ନିଜର ଆବଶ୍ୟକତା ମୁତାବକ କାଠ ଚିହ୍ନିତ ଓ ରକ୍ଷିତ ଜଂଗଲରୁ ନେଉଥିଲେ ।

ଓଡ଼ିଶାର ଜିଲ୍ଲାମାନଂକ ମଧ୍ୟରେ ଅବିଭକ୍ତ ଫୁଲବାଣୀ, କୋରାପୁଟ, ଢେଂକାନାଳ, ଗଂଜାମ, କେଉଁଝର, ମୟୂରଭଂଜ ଓ ସୁନ୍ଦରଗଡ଼ରେ ବେଶୀ ପରିମାଣର ଜଂଗଲ ଥିଲା । ମୟୂରଭଂଜ ଜିଲ୍ଲା ବିଶେଷତଃ ଶିମିଳିପାଳ

Digitized by srujanika@gmail.com

ଜଂଗଲରେ ଭାରତର ସର୍ବୋତ୍କୃଷ୍ଟ ମୌସୁମୀ ବା କ୍ରାନ୍ତୀୟ ବା ଗ୍ରୀଷ୍ମମଣ୍ଡଳୀୟ ଜଂଗଲ ଥିଲା । ଏବେ ମଧ୍ୟ ଶିମିଳିପାଳରେ ଏହା ଅକ୍ଷତ ରହିଛି । ଏହି ଜଂଗଲ ଜୈବ-ବିବିଧତା ପାଇଁ ପ୍ରସିଦ୍ଧ – ଅର୍ଥାତ୍ ଏହି ଜଂଗଲରେ ବହୁ ରକମର ଉଦ୍‌ଭିଦ ଓ ପ୍ରାଣୀ ଦେଖାଯାନ୍ତି ।

ଓଡ଼ିଶା ଗ୍ରୀଷ୍ମ ମଣ୍ଡଳରେ ଅବସ୍ଥିତ । ରାଜ୍ୟରେ ପୂର୍ବଦିଗ ସମୁଦ୍ରକୂଳର ପଶ୍ଚିମ ଓ ଉତ୍ତର ପଶ୍ଚିମଯାଏ ୧୭୦୦ ମିଟରର ପାହାଡ଼ମାନ ଅଛି । ଏଥିରେ ବହୁ ରକମର ଉଦ୍‌ଭିଦ ଦେଖାଯାଏ । ଜଂଗଲ ଗୋଟିଏ ପ୍ରାକୃତିକ ଉଦ୍‌ଭିଦ ଅଂଚଳ ।

ଓଡ଼ିଶାର ଜଂଗଲଗୁଡ଼ିକ ବିଶେଷତଃ ଶାଳ ଓ ବାଉଁଶ ଜଂଗଲ । ଦକ୍ଷିଣ ଓ ଦକ୍ଷିଣ-ପଶ୍ଚିମ ଓଡ଼ିଶାରେ ବିଶେଷତଃ ଅବିଭକ୍ତ କୋରାପୁଟ, କଳାହାଣ୍ଡି ଓ ବଲାଂଗୀର ଜିଲ୍ଲାରେ ପ୍ରାକୃତିକ ସାଗୁଆନ୍ ବା ଟିକ୍ ଜଂଗଲ ଦେଖାଯାଏ । ଦକ୍ଷିଣ ଓଡ଼ିଶା ଭାରତୀୟ ଜଂଗଲର ଦୁଇ ବୃହତ କିସମ ଶାଳ ଓ ସାଗୁଆନର ମିଳନ ସ୍ଥଳ । ଏହି ଅଂଚଳର ଦକ୍ଷିଣକୁ ଶାଳ ଜଂଗଲ ଦେଖାଯାଏ ନାହିଁ । ଓଡ଼ିଶାର ଉତ୍ତରାଂଚଳରେ ପ୍ରାକୃତିକ ସାଗୁଆନ ଜଂଗଲ ଦେଖାଯାଏ ନାହିଁ । ଓଡ଼ିଶାରେ ଶାଳ ସହିତ ବାଉଁଶ ଜଂଗଲ ଦେଖାଯାଏ ।

—

Digitized by srujanika@gmail.com

# ଓଡ଼ିଶାର ପ୍ରାକୃତିକ ଜଙ୍ଗଲ କିସମ

ଓଡ଼ିଶା କ୍ରାନ୍ତୀୟ ବା ଗ୍ରୀଷ୍ମମଣ୍ଡଳରେ ଅବସ୍ଥିତ । ଏଠାରେ ପାଞ୍ଚ ପ୍ରକାର ଅରଣ୍ୟ ଦେଖାଯାଏ । ସେଗୁଡ଼ିକର ସଂକ୍ଷିପ୍ତ ବିବରଣୀ ନିମ୍ନରେ ଦିଆଗଲା ।

**(୧) କ୍ରାନ୍ତୀୟ ଅର୍ଦ୍ଧ ଚିରହରିତ ଅରଣ୍ୟ** – ଏହା ସାଧାରଣତଃ ପାହାଡ଼ଗୁଡ଼ିକର ଆର୍ଦ୍ର ଉପତ୍ୟକାମାନଙ୍କରେ ଏବଂ ସମୁଦ୍ର କୂଳରେ କେତେକ ସ୍ଥାନରେ ଦେଖାଯାଏ । ଏହି ଅରଣ୍ୟର ବୃକ୍ଷଗୁଡ଼ିକ ଡେଙ୍ଗା । ଚନ୍ଦନ, ବେତ, ଅର୍ଜୁନ, ଆମ୍ବ, ଚମ୍ପା, ମେଗୁଆ, କଂଗଡ଼ା ପ୍ରଭୃତି ବୃକ୍ଷ ଏହି ଅରଣ୍ୟରେ ମିଳେ । ଏହଙ୍ଗଲରେ ବହୁ ବୁଦା ଓ ଲତା ଦେଖାଯାଏ ।

**(୨) କ୍ରାନ୍ତୀୟ ଆର୍ଦ୍ର ପର୍ଣ୍ଣମୋଚୀ ଅରଣ୍ୟ** – ଓଡ଼ିଶାରେ ଏହି ଅରଣ୍ୟ ବ୍ୟାପକ ଭାବରେ ଦେଖାଯାଏ । ଏହା ସବୁଠାରୁ ମୂଲ୍ୟବାନ୍ ଜଂଗଲ । ଏହି ଜଂଗଲରେ ଶାଳଗଛମାନ ପ୍ରଧାନ । ଏହାଛଡ଼ା ଅସନ, ବିଜା, ହଳଦୁ, ଧଉରା, ବାଂଧନ, କେନ୍ଦୁ, ମିଚ୍ଚିକିନିଆ ଗଛସବୁ ଦେଖାଯାଏ । ଏହି ଅରଣ୍ୟର ବୃକ୍ଷଗୁଡ଼ିକ ଗ୍ରୀଷ୍ମକାଳରେ ଅତ୍ୟଧିକ ଗରମ ହେତୁ ପତ୍ରଝଡ଼ା ଦିଅନ୍ତି । ଏହି ଅରଣ୍ୟରୁ ମଧ୍ୟ ବିଡ଼ି ପ୍ରସ୍ତୁତି ପାଇଁ କେନ୍ଦୁପତ୍ର ସଂଗ୍ରହ କରାଯାଏ । ଏହି କିସମର ସର୍ବବୃହତ ଏକଚକଡ଼ା ଜଂଗଲ ହେଲା ମୟୂରଭଂଜର ଶିମିଳିପାଳ ପାହାଡ଼ ଅଂଚଳର ଅରଣ୍ୟ । ଏହା ବିବିଧ ପ୍ରକାରର ଉଦ୍‌ଭିଦ ଓ ପ୍ରାଣୀମାନଙ୍କର ଗନ୍ତାଘର । ଏଠାରେ ବହୁ ପରିଜାତିର ଅରଚିଡ୍‌ମାନ ଦେଖାଯାଏ ଯେଉଁଗୁଡ଼ିକ ଲତାପରି ଗଛକୁ ଆଶ୍ରୟ କରନ୍ତି ଓ ସେଥିରେ ଫୁଲ ଫୁଟେ ।

**(୩) କ୍ରାନ୍ତୀୟ ଶୁଷ୍କ ପର୍ଣ୍ଣମୋଚୀ ଅରଣ୍ୟ** – ଏହା ଅପେକ୍ଷାକୃତ ଶୁଷ୍କ ଜଳବାୟୁରେ ଦେଖାଯାଏ । ଏଥିରେ ନିମ୍ନମାନର ଶାଳଗଛ ଥାଏ । କିନ୍ତୁ ଏହି ଅରଣ୍ୟରେ ମୁଖ୍ୟତଃ ସାଗୁଆନ ଓ ବାଉଁଶ ଗଛ ଦେଖାଯାଏ । ସାଗୁଆନ କାଠର ଗୃହ ଉପଯୋଗୀ ଆସବାବପତ୍ରପାଇଁ ଚାହିଦା ଅଛି ଏବଂ ଏହାର ମୂଲ୍ୟ ମଧ୍ୟ ଅଧିକ । ସାଗୁଆନ ଗଛ ଓଡ଼ିଶାର ଦକ୍ଷିଣ ଓ ଦକ୍ଷିଣ-ପଶ୍ଚିମ ଅଂଚଳରେ ଦେଖାଯାଏ । ସାଗୁଆନ ବ୍ୟତୀତ ଏହି ଅରଣ୍ୟରେ ଥିବା ଅନ୍ୟାନ୍ୟ ଗଛ

Digitized by srujanika@gmail.com

ହେଲା – ସିଦ୍ଧା, ଧଉରା, କରଡ଼, ସୋମ, ବାବୁଲ, ଖଇର, ହରିଡ଼ା, ବାହାଡ଼ା, ଗେଂଦୁଲି, କୁସୁମ, ମହୁଆ, କୋଚିଲା, ସଲାଇ, ସିମୁଳ, ପଳାଶ, ଚାକୁଣ୍ଡା ଆଦି ।

**(୪) ସମୁଦ୍ରକୂଳର ଜଂଗଲ** – ଏହା ସମୁଦ୍ରକୂଳରେ ଦେଖାଯାଏ । ଗଛଗୁଡ଼ିକ ଚିରହରିତ୍ । ଗଛମାନଙ୍କ ମଧ୍ୟରେ ଝାଉଁଗଛ ପ୍ରଧାନ । ଏହା ବାଲିକୁ ବାଂଧି ରଖେ ।

**(୫) ଉପକୂଳବର୍ତ୍ତୀ ଜୁଆରିଆ ଅରଣ୍ୟ ବା ହେନ୍ତାଳ ବନ** – ଏହା ଉପକୂଳର ସନ୍ତସନ୍ତିଆ ଅଂଚଳ ଓ ନଦୀମୁହାଣ ଅଂଚଳରେ ଦେଖାଯାଏ । ଏଠାରେ ସମୁଦ୍ରର ଲୁଣାପାଣି ତଥା ଜୁଆର ମାଡ଼େ । ଏହା ଏକଦା ଚାନ୍ଦବାଲିଠାରୁ ଦେବୀନଦୀ ମୁହାଣଯାଏ ବ୍ୟାପ୍ତ ଥିଲା । କିନ୍ତୁ ଚାଷବାସ ଯୋଗୁଁ ଏହା ନିଶ୍ଚିହ୍ନ ହୋଇଯାଇଛି । ଏହା କଟକ ଜିଲ୍ଲାର ଧାମରା (ବୈତରଣୀ ଓ ବ୍ରାହ୍ମଣୀର ତ୍ରିକୋଣଭୂମି) ଓ ମହାନଦୀର ତ୍ରିକୋଣଭୂମି ଅଂଚଳରେ ଦେଖାଯାଏ । ଏହାକୁ ହେନ୍ତାଳ ବନ କହନ୍ତି । ବର୍ତ୍ତମାନ ଏହା ଭିତରକନିକାରେ ବିଶେଷ ଭାବରେ ଦେଖାଯାଉଛି । ଯଦିଓ ହେନ୍ତାଳ ଜଂଗଲର ଆୟତନ ମାତ୍ର ୨୭୦ ବର୍ଗ କିଲୋମିଟର, ତଥାପି ଏହା ବିଶେଷତଃ ବାତ୍ୟା ସମୟରେ ସମୁଦ୍ର ପବନ ଓ ଜୁଆରରୁ ଉପକୂଳ ଅଂଚଳକୁ ରକ୍ଷାକରେ ।

ଏହି ଅଂଚଳରେ ରାଇ, ଗରଜା, କେରକେରା, କରିକା, ଧଳାବାଣୀ, କଳାବାଣୀ, କେରୁଆ, ଗୁଆଁ, ସୁନ୍ଦରୀ, ଟୁଂଦା, ତେଲୁଣୀ, ହରକଂଚ, ହେନ୍ତାଳ ଇତ୍ୟାଦି ଗଛ ଦେଖାଯାଏ । ଏହାକୁ ସମୁଦ୍ର ଉପକୂଳରେ ବାସକରୁଥିବା ଲୋକମାନେ ବ୍ୟବହାର କରନ୍ତି ।

ଏହି ଅଂଚଳରେ ବହୁ ପ୍ରକାରର ବନ୍ୟପ୍ରାଣୀ ବାସ କରନ୍ତି । କୁମ୍ଭୀରମାନଙ୍କର ଏହା ବାସସ୍ଥଳ । ଲକ୍ଷାଧିକ ସଂଖ୍ୟାରେ ଅଲିଭର ରିଡ଼ଲେ କଇଁଛ ସମୁଦ୍ରରୁ ଏହି ଅଂଚଳକୁ ଆସି ଭୂମି ଉପରେ ଅଣ୍ଡା ଦିଅନ୍ତି ।

**ବନୌଷଧି ଓ ସୁଗଂଧ ଉଦ୍‌ଭିଦ** – ଓଡ଼ିଶାର ଜଳବାୟୁ ଓ ପ୍ରାକୃତିକ ପରିସ୍ଥିତି ଔଷଧିବୃକ୍ଷ ଜନ୍ମିବାପାଇଁ ଅନୁକୂଳ । ଓଡ଼ିଶାର ଜଂଗଲମାନଙ୍କରେ ବହୁବିଧ ଔଷଧି ବୃକ୍ଷ ଦେଖାଯାଏ । ବିଶେଷତଃ ଏହା ଅବିଭକ୍ତ କୋରାପୁଟ, ଫୁଲବାଣୀ ଓ ମୟୂରଭଂଜ ଜିଲ୍ଲାରେ ଦେଖାଯାଏ । ଏହି ଅଂଚଳର ଜଂଗଲ-

Digitized by srujanika@gmail.com

ମାନଙ୍କରେ ଯେଉଁ ଫଳମୂଳ ସଂଗ୍ରହ କରାଯାଉଛି, ସେଗୁଡ଼ିକ ହେଲା – ଅଁଳା, ଅନନ୍ତମୂଳା, ଅପମାରଂଗ, ଅର୍କ, ଅଶୋକ, ଅଶ୍ୱଗଂଧ, ଭଲ୍ଲାଟକ, ଭୂମ୍ୟାମଲକି, ଭୃଙ୍ଗରାଜ, ବିଭିଟକ, ବିଲ୍ୱ, ବ୍ରାହ୍ମୀ, ଚକ୍ରମର୍ଦ୍ଧ, ଚଂପକ, ଧାତକୀ, ଧାତୁରା, ଗୁଡୁଚି, ହରିତକୀ, ଜଂପଲାକ, କାଂଚନରା, କଣ୍ଟାକରୀ, କପିଥ, ନିର୍ମୂଳୀ, ଖଇର, କରତତିକ୍ତ, କୁଟଜ, ଲୋଧ୍ରା, ମଦନପଂଳ, ମଦ-ୟଂଟକୀ, ମଧୁକ, ମଧୁୟଷ୍ଟି, ନାଗକେଶର, ନୀଲୋତ୍ପଳ, ନିମ୍ବ, ନାରୁଗଣୀ, ପଳାଶ, ପାଟଳ, ରକ୍ତ, ସପ୍ତପର୍ଣ୍ଣ, ସର୍ପଗଂଧା, ସର୍ସର୍ପ, ସଲପଣି, ସତବରୀ, ତୁଳସୀ, ଗୁଦମ୍ବର, ବଚ୍, ଉର୍ଶୀର, ବନହରିତା, ବରୁଣ, ବସକ ଓ ବିଶ୍ୱମଷ୍ଟି ।

ସୁଗଂଧି ବୃକ୍ଷ ମଧ୍ୟରେ ବଣତୁଳସୀ ପ୍ରଧାନ । ଏହା କର୍ପୂର ତିଆରିରେ ବ୍ୟବହୃତ ହୁଏ । ଗଂଜାମରେ କିଆ ଓ କେତକୀରୁ ଅର୍କ ବା ଏସେନ୍ସ ପ୍ରସ୍ତୁତ କରାଯାଏ । ବ୍ରାହ୍ମୀ ଓ ଭୃଙ୍ଗରାଜ କେଶତୈଳ ପାଇଁ ବ୍ୟବହୃତ ହୁଏ ।

ଆଦିବାସୀମାନେ ଏହିସବୁ ଔଷଧି ଓ ସୁଗଂଧି ଗଛରୁ ଫଳ ସଂଗ୍ରହ କରନ୍ତି ଯାହା ସରକାରୀ ଓ ଘରୋଇକଂପାନୀମାନେ ବହୁ ପରିମାଣରେ କିଣି ଆୟୁର୍ବେଦ ଔଷଧ ଓ ପ୍ରସାଧନ ସାମଗ୍ରୀ ପ୍ରସ୍ତୁତ କରନ୍ତି । ଏଗୁଡ଼ିକର ବହୁଳ ଚାଷ ହେଲେ ଜଂଗଲ ଉପରେ ନିର୍ଭର କରୁଥିବା ଆଦିବାସୀମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ହେବ ।

—

*Digitized by srujanika@gmail.com*

# ଓଡ଼ିଶାର ବନସଂପଦ

ଓଡ଼ିଶାର ଅରଣ୍ୟମାନଙ୍କରୁ ଶାଳ, ସାଗୁଆନ, ଅସନ, କୁସୁମ, ବାଂଧଣ ଓ ଶିଶୁ ପ୍ରଭୃତି ନାନାପ୍ରକାରର ଜାତିଆ କାଠ ମିଳେ । ସେଗୁଡ଼ିକ ଶକ୍ତ ଏବଂ ମୂଲ୍ୟବାନ୍ । ଗୃହ ଓ ଗୃହଉପକରଣ ନିର୍ମାଣ ପାଇଁ ଏହା ବିଶେଷ ଉପଯୋଗୀ । ଏହା ବ୍ୟତୀତ ଜଂଗଲରେ ବାଉଁଶ, ବେତ ଓ ସବାଇ ଘାସ ମିଳେ । ବାଉଁଶ କାଗଜ ତିଆରିରେ ବ୍ୟବହୃତ ହୁଏ । ସବାଇ ଘାସରୁ ବହୁ ପରିମାଣରେ ଦଉଡ଼ି ପ୍ରସ୍ତୁତ କରାଯାଏ । ଏହି ଦଉଡ଼ିରେ ଖଟିଆ ଓ ଆସବାବପତ୍ର ଇତ୍ୟାଦି କରାଯାଏ ।

କେନ୍ଦୁପତ୍ର ଓଡ଼ିଶାର ଏକ ମୂଲ୍ୟବାନ୍ ଅରଣ୍ୟଜାତ ଦ୍ରବ୍ୟ । ଏଥିରୁ ବିଡ଼ି ତିଆରି ହୁଏ । ରାଜ୍ୟ ବନ ବିଭାଗ ବର୍ଷକୁ ୫ ଲକ୍ଷ କୁଇଣ୍ଟାଲ୍ କେନ୍ଦୁପତ୍ର ସଂଗ୍ରହ କରି ୧୪୩ କୋଟି ଟଙ୍କାରେ ବିକ୍ରୟ କରନ୍ତି ।

ଜଂଗଲରେ ଥିବା ଶାଳଗଛର ଶାଳ ମଂଜିରୁ ଶାଳତେଲ ଉତ୍ପାଦନ କରାଯାଏ ଯାହା ବନସ୍ପତି ଇତ୍ୟାଦି ଖାଇବା ତେଲରେ ବ୍ୟବହୃତ ହୁଏ । ଆଦିବାସୀମାନେ ଜଂଗଲରୁ ଶାଳମଂଜି ସଂଗ୍ରହ କରନ୍ତି । ରାଜ୍ୟରେ ପ୍ରତିବର୍ଷ ୩୦ ହଜାର ଟନ୍ ଶାଳମଂଜି ସଂଗ୍ରହ କରାଯାଏ ଏବଂ ୮ କୋଟି ଟଙ୍କାରେ ରାଜ୍ୟ ବନନିଗମ ତାହା ବିକ୍ରୀ କରେ ।

ଓଡ଼ିଶାର ଜଂଗଲଗୁଡ଼ିକରୁ ଲାଖ, ଖଇର, ଅଠା, ଝୁଣା, ମହୁଲ, ମହୁ ପ୍ରଭୃତି ମୂଲ୍ୟବାନ୍ ପଦାର୍ଥ ସଂଗୃହୀତ ହୁଏ ।

ସ୍ୱାଧୀନତାଲାଭ ପରେପରେ ସରକାର ରାଜସ୍ୱ ଆଦାୟ ପାଇଁ ଜଂଗଲରୁ ଅବିଚାରିତ ଭାବରେ ଗଛ କଟାଉଥିଲେ ଓ ତାହା ବିକ୍ରୟ କରୁଥିଲେ । ଏହିପରି ଜଂଗଲ କାଟିବା ଫଳରେ ଜଂଗଲ ସଂପଦ ବହୁ ପରିମାଣରେ କ୍ଷୟ ହେଉଥିଲା । ଜାତୀୟ ଅରଣ୍ୟନୀତି ଅନୁସାରେ ଆମ ପରିବେଶରେ ପାରିସ୍ଥିତିକ ସନ୍ତୁଳନ ପାଇଁ ରାଜ୍ୟର ସମୁଦାୟ ଆୟତନର ପ୍ରାୟ ଶତକଡ଼ା ୩୩ ଭାଗ ଅରଣ୍ୟ

Digitized by srujanika@gmail.com

ରହିବା ଆବଶ୍ୟକ । ଅରଣ୍ୟ ଜଳବାୟୁକୁ ପ୍ରଭାବିତ କରେ । ଅରଣ୍ୟ ଜଳବାୟୁକୁ ଆର୍ଦ୍ର ରଖେ ଓ ବୃଷ୍ଟିପାତ ନିମନ୍ତେ ଅନୁକୂଳ ହୁଏ । ଅରଣ୍ୟ ମୃତ୍ତିକା କ୍ଷୟକୁ ରକ୍ଷାକରେ । ତେଣୁ ବର୍ତ୍ତମାନ ଜଂଗଲକୁ ଆଉ ରାଜସ୍ୱ ଆୟର ପ୍ରଧାନ ଉତ୍ସ ରୂପେ ଗ୍ରହଣ କରାଯାଉନାହିଁ ।

ବର୍ତ୍ତମାନ ଜଂଗଲରୁ ସରକାରୀ ଭାବେ ବ୍ୟାବସାୟିକ ଉଦ୍ଦେଶ୍ୟରେ ଜଂଗଲକଟା ବଂଦ ଅଛି । କେବଳ ପାକଳ ଓ ବୁଢା ଗଛ ଜଂଗଲରୁ ଆବାଦ ହେଉଛି ଓ ବିକ୍ରୀ ହେଉଛି । ଗୃହନିର୍ମାଣରେ କାଠ ପରିବର୍ତ୍ତେ ଲୁହା, ଆଲୁମିନିୟମ୍ ଓ ପ୍ଲାଷ୍ଟିକ୍ ଉପକରଣମାନ ବ୍ୟବହାର ନିମନ୍ତେ ସରକାର ନିର୍ଦ୍ଦେଶ ଦେଇଛନ୍ତି ।

ତଥାପି କେତେକ ସ୍ଥାନରେ ଜଂଗଲ କାଟି କୃଷିକ୍ଷେତ୍ର କରାଯାଉଛି । ପାର୍ବତ୍ୟ ଅଂଚଳରେ ଆଦିବାସୀମାନେ ଅରଣ୍ୟ ସଫାକରି ଓ ତାହାକୁ ପୋଡ଼ି ପୋଡୁଚାଷ କରିବା ଫଳରେ ଜଂଗଲ ସଂପଦର ବିଶେଷ କ୍ଷତି ଘଟୁଛି ।

ଲୋକଂକର କାଠ, ବିଶେଷତଃ ଜାଳେଣି ପାଇଁ, ଆବଶ୍ୟକତା ରହିଛି । ରାଜ୍ୟରେ ଜାଳେଣି କାଠର ଆବଶ୍ୟକତା ବାର୍ଷିକ ଦେଢ଼ଲକ୍ଷ ଟନ୍ ଥିବାବେଳେ ଜଂଗଲ ବିଭାଗ ମାତ୍ର ୫୦ ହଜାର ଟନ୍ ଜାଳେଣି କାଠ ଯୋଗାଇ ପାରୁଛନ୍ତି । କାଠର ଚାହିଦା ଓ ମୂଲ୍ୟ ଯୋଗୁଁ ବହୁ ଜାଗାରେ ଲୁଚାଛପାରେ ଗଛକଟା ହେଉଛି । ଏପରିସ୍ଥିତିରେ ବହୁ ଜାଗାରେ କାଠଚୋରମାନେ ତତ୍ପର ହୋଇଉଠିଛନ୍ତି ।

ବନ୍ୟସଂପଦ ରକ୍ଷାକରିବାକୁ ହେଲେ, ବନ ବିଭାଗର କର୍ମଚାରୀମାନଂକୁ ସକ୍ରିୟ ଓ ତତ୍ପର ହେବାକୁ ପଡ଼ିବ । ତତ୍‌ସଂଗେ ପତିତ ଜାଗାରେ ନୂତନ କୃତ୍ରିମ ଜଂଗଲ ସୃଷ୍ଟିକରି ଲୋକମାନଂକର କାଠର ଚାହିଦା ପୂରଣ କରିବାକୁ ହେବ ।

—

Digitized by srujanika@gmail.com

## ଜଙ୍ଗଲ ଓ ଆଦିବାସୀ

ଓଡ଼ିଶାର ଆଦିବାସୀମାନେ ହେଲେ ବଣଜଂଗଲର ଅଧିବାସୀ। ସେମାନଂକର ଜୀବନ ଓ ଜଂଗଲ ମଧ୍ୟରେ ନିବିଡ଼ ସଂପର୍କ ରହିଛି। ୧୯୯୧ ମସିହା ଜନଗଣନା ଅନୁଯାୟୀ ଓଡ଼ିଶାରେ ଆଦିବାସୀମାନଂକର ସଂଖ୍ୟା ୮୦ ଲକ୍ଷ। ସେମାନେ ଜଂଗଲ ଉପରେ ଖାଦ୍ୟ ଓ ରୋଜଗାର ପାଇଁ ନିର୍ଭର କରନ୍ତି। ଅଧିକାଂଶ ଆଦିବାସୀ ଜଂଗଲ ଭିତରେ ହିଁ ବାସକରନ୍ତି। କିନ୍ତୁ ଜଂଗଲରେ ବାସକରୁଥିବା ଓ ଚାଷ କରୁଥିବା ଅଧିକାଂଶ ଜମି ସେମାନଂକ ନାମରେ ଆଇନ ଅନୁଯାୟୀ ନାହିଁ।

ଚାଷଜମି ନଥିବା ଯୋଗୁଁ ଓ ଚାଷଜମିର ସ୍ୱଳ୍ପତା ଯୋଗୁଁ ଆଦିବାସୀ-ମାନେ ପାହାଡ଼ ଉପର ଜଂଗଲରେ ପୋଡୁଚାଷ କରନ୍ତି। ମାର୍ଚ୍ଚ-ଏପ୍ରିଲ୍ ମଧ୍ୟରେ ସେମାନେ ଗଛକାଟି ଜଂଗଲ ପୋଡ଼ନ୍ତି ଓ ତା'ପରେ ମାଟିକୁ ଚାଷ କରି ମଂଜି ବୁଣନ୍ତି। ଏହି ପୋଡୁଚାଷ ପ୍ରଥା ଆଦିମ ଯୁଗରୁ ଚଳି ଆସୁଛି। ଏଥିରେ ଧାନ, ବାଜରା, ମକା, ଜଓ୍ୱାର, ରାଶି, ମାଣ୍ଡିଆ, ଜହ୍ନା, କାଙ୍ଗୁ, ଘଣ୍ଟିଆ, ବିରି, କାଂଦୁଲ, ସୁଆଁ, ଗୁରଜୀ, ଜଡା, ଅଳସି, ଡିଲ ଇତ୍ୟାଦି ଫସଲ ଉତ୍ପାଦନ କରାଯାଏ। ଅକ୍ଟୋବର-ନଭେମ୍ବର ମାସରେ ଫସଲ ଅମଳ ହୁଏ। କଂଧମାନେ ଫୁଲବାଣୀ ଜିଲ୍ଲାରେ ବ୍ୟାପକ ଭାବେ ହଳଦି ଚାଷ କରନ୍ତି।

ପୋଡୁଚାଷ ଫଳରେ ଜଂଗଲ ନଷ୍ଟହୋଇ ପାହାଡ଼ ଲଣ୍ଡା ହୋଇଯାଏ ଓ ମୃତ୍ତିକା ମଧ୍ୟ ନଷ୍ଟ ହୁଏ। ପୋଡୁଚାଷଦ୍ୱାରା ଜମିର ଉତ୍ପାଦିକା ଶକ୍ତି ହ୍ରାସ ପାଏ। ଗୋଟିଏ ପାହାଡ଼ ଜମିରେ ଦୁଇ କିମ୍ବା ତିନିଥର ଫସଲ ଅମଳ କଲାପରେ, ଆଦିବାସୀମାନେ ଆଉ ଗୋଟିଏ ପାହାଡ଼ ଜଂଗଲକୁ ଯାଆନ୍ତି ଓ ପୋଡୁଚାଷ କାମର ପୁନରାବୃତ୍ତି କରନ୍ତି। ଗରିବ ଆଦିବାସୀମାନେ ପୋଡୁଚାଷରୁ ମିଳୁଥିବା ଫସଲରେ ମାତ୍ର ଚାରିମାସ ଚଳିଥାନ୍ତି।

Digitized by srujanika@gmail.com

ଓଡ଼ିଶାର ଜଂଗଲର ଶତକଡ଼ା ୫୦ ଭାଗ ଅଂଚଳରେ ପୋଡୁଚାଷ ହେଉଛି ଏବଂ ଏହା ଉପରେ ୨ ଲକ୍ଷ ଆଦିବାସୀ ପରିବାର ପ୍ରତିପୋଷିତ ହେଉଛନ୍ତି । ଆଦିବାସୀ ଅଂଚଳରେ ଚାଷଜମିର ଘୋର ଅଭାବ ଯୋଗୁଁ, ପୋଡୁଚାଷୀଂକୁ ଅନ୍ୟତ୍ର ଚାଷଜମି ଦେଇ ଥାଇଥାନ କରିବା ଅସମ୍ଭବ । ତେଣୁ ନୂଆ ସଲଟ୍ ପ୍ରଣାଳୀରେ ପୋଡୁଚାଷ ବଦଳରେ ନୂଆ ପ୍ରକାରର ଚାଷ ପ୍ରବର୍ତ୍ତନ କରିବାପାଇଁ ଉଦ୍ୟମ ଚାଲିଛି ।

ସଲଟ୍ (ପାହାଡ଼ିଆ ଓ ଗଡ଼ାଣିଆ ଜମିରେ ଚାଷପାଇଁ ବୈଜ୍ଞାନିକ ପ୍ରଣାଳୀ) ଟେକ୍‌ନୋଲଜି ଅନୁଯାୟୀ ଜଳଛାୟା ପରିଚାଳନା ପ୍ରଥା ପ୍ରବର୍ତ୍ତନ କରାଯାଏ ଏବଂ ଦୀର୍ଘମିଆଦୀ ସୂତ୍ରରେ ଜମି ଓ ଜଳର ଉପଯୁକ୍ତ ବ୍ୟବହାର କରାଯାଏ । ଏହା ସହିତ ପାହାଡ଼ର ଗଡ଼ାଣିଆ ଅଂଚଳରେ ଛୋଟ ଗଛର ବାଡ଼ମାନ ତିଆରି କରି ବର୍ଷିକିଆ ଫସଲ ଉତ୍ପାଦନ କରିହୁଏ ଏବଂ ଜଂଗଲ ଗଛ ଓ ଫଳଗଛ ରୋପଣ କରାଯାଏ ଯାହା ଫଳରେ କି ମୃତ୍ତିକାକ୍ଷୟ ରୋକାଯାଇ ପାରେ । ଏହି ପ୍ରଣାଳୀ ଅବଲମ୍ବନ କଲେ ପୋଡୁଚାଷ ଦରକାର ପଡ଼ିବନାହିଁ, ଜଂଗଲର ସୁରକ୍ଷା ହେବ ଏବଂ ଆଦିବାସୀମାନଂକୁ ବର୍ଷସାରା କାମ ମିଳିବ ।

ଖାଦ୍ୟପାଇଁ ଆଦିବାସୀମାନେ ଜଂଗଲରେ ମିଳୁଥିବା ଫଳମୂଳ ଉପରେ ନିର୍ଭର କରନ୍ତି । ଏହି ଜଂଗଲଜାତ ଦ୍ରବ୍ୟକୁ ଲଘୁ ବନଜାତ ଦ୍ରବ୍ୟ କୁହାଯାଏ । ଏଗୁଡ଼ିକ ମଧ୍ୟରେ ଶାଳମଂଜି, ମହୁଲ, ବେତ, ତେନ୍ତୁଳି, ପାଳୁଅ, ମହୁ, କୋଚିଲା, ସିକାକାଇ, ଗିଲ, ବଣତୁଳସୀ, ଇଂଦ୍ରଜବ, ସୁନାରୀଛାଲି, ଦନ୍ତାରିଛାଲି, ଲାଖ, ତ୍ରିଫଳା (ହରିଡ଼ା, ବାହାଡ଼ା, ଅଁଳା), ଟସର, ଭିଠା, କାଜୁ, ନିମ୍ବମଂଜି, ଟୋଲ, କରଂଜ ମଂଜି, କୁସୁମ ମଂଜି, ଚାରମଂଜି, ଆମ୍ବ କୋଇଲି, ଗେଂଦୁଲି ଅଠା, ଚାର ଅଠା, ଧଉଡ଼ା ଅଠା, ଅନନ୍ତ ମଂଜି, ବେଣାଚେର, ଶିଆଳିପଟ, ଚାକୁଣ୍ଡା ମଂଜି, ବାଘନଖି, ବାବୁଲ ମଂଜି, ଫୁଲଝାଡୁ, ଫେନଫେନକ ଫଳ, ପଳାଶ ମଂଜି, ବାଇଗୋବା, ବଣ କୋଳଥ, ବଣ ହଳଦୀ, କମଳାଗୁଣ୍ଡି, ମରଡ଼ା ମଂଜି, ସବାଇ ଘାସ, ବାଇଡଂକ, ମସିଣା କାଠି, ନାଗେଶ୍ୱର ମଂଜି, ପୋଲାଂଗ, ମାଖନା ମଂଜି, ଖେଳୁଆ ଲଇ, ଭୃସୁଂଗାପତ୍ର, ଚିରେଇତା, ଧାତୁକି ଫୁଲ, ଶାଳ ଓ ଶିଆଳି ପତ୍ର, ଖଜୁରିପଟି, ତାଳପତ୍ର, ଭାଲିଆ, ଶିମିଳିତୂଳା, ଜଂଗଲ ଝୋଟ, ପୂତରାଶି ଚେର, ପିପଳି

Digitized by srujanika@gmail.com

ଚେର, କେଂଦୁପତ୍ର, ଝୁଣା, ରୋହିଣୀ ଫୁଲ, ସାନନଇ, ଏକଶିରା ଫଳ ପ୍ରଧାନ । ଜଂଗଲରେ ଏହିପରି ୬୮ଟି ଲଘୁ ବନଜାତ ଦ୍ରବ୍ୟ ମିଳେ ଯାହା ଆଦିବାସୀମାନେ ସଂଗ୍ରହ କରନ୍ତି ଏବଂ ବିକନ୍ତି ।

ସାଧାରଣତଃ ବାହାର ବ୍ୟବସାୟୀମାନେ ଆଦିବାସୀମାନଂକଠାରୁ କମ୍ ଦରରେ ଲଘୁ ବନଜାତ ଦ୍ରବ୍ୟ କିଣି ଠକନ୍ତି ଓ ସେମାନଂକୁ ଶୋଷଣ କରନ୍ତି । ଆଦିବାସୀମାନଂକ ଦ୍ୱାରା ସଂଗୃହୀତ ଲଘୁ ବନଜାତ ପଦାର୍ଥ ଓ ବଳକା କୃଷିଜାତ ଦ୍ରବ୍ୟ ନିମିତ୍ତ ଉପଯୁକ୍ତ ମୂଲ୍ୟ ପ୍ରଦାନ କରିବା ସଂଗେ ସଂଗେ ସେମାନଂକୁ ଅସାଧୁ ବ୍ୟବସାୟୀଂକ ଦାଉରୁ ରକ୍ଷା କରିବାପାଇଁ ୧୯୭୨ ମସିହାରେ ଟି.ଡି.ସି.ସି. ବା 'ଆଦିବାସୀ ଉନ୍ନୟନ ସମବାୟ ନିଗମ' ରାଜ୍ୟ ସରକାରଂକଦ୍ୱାରା ଗଠିତ ହୋଇଥିଲା । ୧୯୯୬-୯୭ରେ ଏହା ପ୍ରାୟ ୩ କୋଟି ଟଂକାର ଲଘୁ-ବନଜାତ ଦ୍ରବ୍ୟ ସଂଗ୍ରହ କରିଥିଲା । ଟି.ଡି.ସି.ସି. ଗୋଟିଏ ସରକାରୀ ସଂସ୍ଥା । ନିଜ କର୍ମଚାରୀମାନଂକୁ ରଖି ସେମାନଂକ ଦ୍ୱାରା ଏକଚାଟିଆ ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ କରୁଥିବାରୁ ପରିଚାଳନା ଖର୍ଚ୍ଚ ଅଧିକ ହେଉଛି ଏବଂ ଏହି ବ୍ୟାବସାୟିକ କ୍ଷତି ଭରଣାପାଇଁ ସରକାରୀ ସାହାଯ୍ୟ ଆବଶ୍ୟକ ହେଉଛି । ଏହା ମଧ୍ୟରେ ସରକାର ଗୋଟିଏ ଘରୋଇ ଅନୁଷ୍ଠାନ ସହ ମିଶି ଉତ୍କଳ ଫରେଷ୍ଟ ପ୍ରଡକ୍ଟସ୍ କଂପାନୀ ଗଠନ କରିଛନ୍ତି ଏବଂ ଏମାନଂକୁ କିଛି ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ କରିବାପାଇଁ ଅନୁମତି ଦିଆଯାଇଛି ।



Digitized by srujanika@gmail.com

# ଓଡ଼ିଶାର ଜଙ୍ଗଲ ଓ ବନ୍ୟପ୍ରାଣୀ

ଜଂଗଲରେ ବହୁ ବନ୍ୟପ୍ରାଣୀ ଦେଖାଯାନ୍ତି । ଏମାନେ ଆଗରୁ ନିର୍ଭୟରେ ଜଂଗଲରେ ବିଚରଣ କରୁଥିଲେ । ଲୋକମାନେ ମଧ 'ଜୀବେ ଦୟା' ଦୃଷ୍ଟିରୁ ପଶୁପକ୍ଷୀଂକୁ ଦେଖୁଥିଲେ । କିନ୍ତୁ ଏବେ ଜଂଗଲର ଆୟତନ ହ୍ରାସ ପାଇବା ଯୋଗୁଁ ବନ୍ୟପ୍ରାଣୀମାନଂକର ସଂଖ୍ୟା କ୍ରମେ କମି କମି ଯାଉଛି । ଜଂଗଲରେ ଅବାଧରେ ପଶୁପକ୍ଷୀ ଶିକାର ହେବା ଫଳରେ କେତେକ ବନ୍ୟପ୍ରାଣୀ ପ୍ରାୟ ଲୋପ ପାଇବାକୁ ବସିଲେଣି । ସେଥିପାଇଁ ୧୯୭୨ରେ ଭାରତ ସରକାର ବନ୍ୟଜନ୍ତୁ ସଂରକ୍ଷଣ ଆଇନ ପ୍ରଣୟନ କରିଛନ୍ତି । ଏହା ଫଳରେ ଜଂଗଲରେ ପଶୁ ଶିକାର ବଂଦ କରାଯାଇଛି ।

ଓଡ଼ିଶାରେ ବନ୍ୟଜନ୍ତୁମାନଂକ ମଧରେ ୧୯ ପ୍ରକାର ବିଭିନ୍ନ ଜାତିର ଉଭୟଚର ଜୀବ, ୧୧୦ ଜାତିର ସରୀସୃପ, ୪୭୩ ଜାତିର ପକ୍ଷୀ, ୮୬ ଜାତିର ସ୍ତନ୍ୟପାୟୀ ପ୍ରାଣୀ ଓ ୧୨୪ ରକମର ଫୁଲଫୁଟୁଥିବା ବନଲତା ବା ଅରଚିଡ୍ ଅଛି । ବନ୍ୟଜନ୍ତୁମାନଂକର ସୁମାରି ଅନୁଯାୟୀ ଓଡ଼ିଶାରେ ୨୨୬ଟି ବାଘ, ୩୭୮ଟି ଚିତା, ୨୦୪୪ଟି ହାତୀ, ୬୫୦ଟି ଲୁଣାପାଣିରେ ବାସ କରୁଥିବା କୁମ୍ଭୀର ଓ ୧୦ ଲକ୍ଷ ବିଦେଶାଗତ ପକ୍ଷୀ ଅଛନ୍ତି । ରାଜ୍ୟରେ ସରକାରୀ ଗଛର ପ୍ରତୀକ ହେଲା କଦମ୍ବ, ଫୁଲ ହେଲା ଅଶୋକ, ଜୀବ ହେଲା ସମ୍ବର ଓ ପକ୍ଷୀ ହେଲା ଭଦଭଦଳିଆ ।

ଓଡ଼ିଶାର ସରୀସୃପମାନଙ୍କ ମଧରେ ସମୁଦ୍ର କଇଁଛ, ନଦୀ କଇଁଛ, ଲୁଣାପାଣିର ବଉଳା କୁମ୍ଭୀର, ମଗର, ନଦୀ ପାଣିର ଘଡ଼ିଆଳ କୁମ୍ଭୀର, ଗୋଧି ଓ ବିଭିନ୍ନ ରକମର ସାପ ପ୍ରଧାନ । ପକ୍ଷୀମାନଂକ ମଧରେ ଦଦରହଣା, ବଗ, ସାରଂଗ, ଗେଣ୍ଡାଳିଆ, ବାଜେଣୀ, ହଂସ, ଗେଣ୍ଡି, ବାଜ, ଚିଲ, ବଣକୁକୁଡ଼ା, କୋଇଲି, ପେଚା, ବୁଲ୍‌ବୁଲ୍ ପ୍ରଧାନ । ସ୍ତନ୍ୟପାୟୀ ବନ୍ୟପ୍ରାଣୀ ମଧରେ ସମ୍ବର, ବାରଶିଂଗା, ଚିତଲ, ହରିଣ, ଗୁରାଣ୍ଡି, ନୀଳଗାଇ, ଗଧିଆ, ମହାବଳ ବାଘ, କଲରାପତ୍ରିଆ ବାଘ, ପେଣ୍ଡରା, ବଣଭୁଆଁ, ଚିତା ବିରାଡ଼ି, ଚିତା, ହେଟାବାଘ, ଓଧ, ଭାଲୁ, ଠେକୁଆ, ହାତୀ, ହନୁମାଂକଡ଼, ପାତି ମାଂକଡ଼, ଝିଂକ, ବକ୍ରକାପ୍ତା, ଡଲଫିନ୍ ବା ଶିଶୁମାର (ଭୁଆସୁଣୀ) ପ୍ରଧାନ ।

Digitized by srujanika@gmail.com

ରାଜ୍ୟର ବିଭିନ୍ନ ଜିଲ୍ଲାର ଘଂଚ ଅରଣ୍ୟରେ ବାଘ, ଚିତାବାଘ ଓ ହାତୀ ଦେଖାଯାନ୍ତି । ମୟୂରଭଂଜର ଶିମିଳିପାଳ ଓ ଭୁବନେଶ୍ୱର ନିକଟବର୍ତ୍ତୀ ଚଂଦକା ଅରଣ୍ୟରେ ବହୁ ସଂଖ୍ୟକ ହାତୀ ବାସ କରନ୍ତି । ଅନୁଗୁଳ, ସମ୍ବଲପୁର, ଦେବଗଡ଼, ବୌଦ ଓ କୋରାପୁଟର ଅରଣ୍ୟମାନଂକରେ ନୀଳଗାଈ ଓ ଚଉଶିଂଗା ହରିଣ ଦେଖାଯାନ୍ତି । ମାଲକାନଗିରି ଓ ଖଡ଼ିଆଳ ଅରଣ୍ୟ ବନ୍ୟମହିଷର ବାସସ୍ଥଳୀ । ବଲାଂଗିର, କଳାହାଣ୍ଡି ଓ ନୂଆପଡ଼ା ଜଂଗଲରେ ଗୟଳ ବାସ କରନ୍ତି । ଏହାଛଡ଼ା ଓଡ଼ିଶାର ପ୍ରାୟ ସବୁ ଅରଣ୍ୟରେ ହରିଣ, ସମ୍ବର, କୁଟୁରା, ବାର୍ହା, ଭାଲୁ ଓ ଗଧିଆ ପ୍ରଭୃତି ଦେଖାଯାନ୍ତି । ଓଡ଼ିଶାର ଅରଣ୍ୟମାନଂକରେ ନାନାପ୍ରକାରର ପକ୍ଷୀ ମଧ ଦେଖିବାକୁ ମିଳେ ।

ବନ୍ୟପ୍ରାଣୀ ସଂରକ୍ଷଣ ପାଇଁ ରାଜ୍ୟର ବିଭିନ୍ନ ଅଂଚଳରେ କେତେଗୁଡ଼ିଏ ଜାତୀୟ ପାର୍କ, ଅଭୟାରଣ୍ୟ ଓ ପକ୍ଷୀ-ବିହାର ସ୍ଥାପନ କରାଯାଇଛି । ବାଘ-ମାନଂକର ସୁରକ୍ଷା ପାଇଁ ଶିମିଳିପାଳ ଜଂଗଲରେ 'ବ୍ୟାଘ୍ର ପ୍ରକଳ୍ପ' କାର୍ଯ୍ୟକାରୀ ହେଉଛି ।

ଭୁବନେଶ୍ୱର ନିକଟବର୍ତ୍ତୀ ଚଂଦକା ଅରଣ୍ୟ 'ହାତୀମାନଂକ ପ୍ରକଳ୍ପ' ରୂପେ କାର୍ଯ୍ୟକାରୀ ହେଉଛି ।

କେଂନ୍ଦ୍ରାପଡ଼ା ଜିଲ୍ଲାର ଭିତରକନିକାରେ କୁମ୍ଭୀର ସଂରକ୍ଷଣ ଯୋଜନା କାର୍ଯ୍ୟକାରୀ ହେଉଛି ।

ଅବିଭକ୍ତ ପୁରୀ ଜିଲ୍ଲାର ଚିଲିକା ହ୍ରଦ ଶୀତକାଳରେ ବହୁ ଦୂରାଗତ ଅସଂଖ୍ୟ ପକ୍ଷୀମାନଂକଦ୍ୱାରା ପରିପୂର୍ଣ୍ଣ ହୋଇଥାଏ । ପକ୍ଷୀଶିକାର ବଂଦ କରିବା ପାଇଁ ଚିଲିକାକୁ 'ପକ୍ଷୀ-ବିହାର' ରୂପେ ଘୋଷଣା କରାଯାଇଛି । ଏଠାରେ ପକ୍ଷୀଶିକାର ଏକ ଦଣ୍ଡନୀୟ ଅପରାଧ । ବନ୍ୟପ୍ରାଣୀ ସଂରକ୍ଷଣପାଇଁ ଭିତର-କନିକା ଅଂଚଳରେ ଗୋଟିଏ ଜାତୀୟ ଉଦ୍ୟାନ ଅଛି ।

ରାଜ୍ୟର ବିଭିନ୍ନ ଅଂଚଳରେ ୧୭ଟି ଅଭୟାରଣ୍ୟ ସୃଷ୍ଟି କରାଯାଇଛି – ଶିମିଳିପାଳ, କୁଲଡିହା, ହଦଗଡ଼, ଭିତରକନିକା, ନଂଦନକାନନ, ଚଂଦକା-ଡମପଡ଼ା, ବାଲୁଖଣ୍ଡ-କୋଣାର୍କ, ଚିଲିକା (ନଳବଣ), ବଇଶିପଲ୍ଲୀ, ସାତକୋଶିଆ, ଖଲାଶୁଣୀ, ବଡ଼ରମା, ଦେବ୍ରିଗଡ଼, ସୁନାବେଢ଼ା, କରଲାପାଟ, କୋଟଗଡ଼ ଓ ଲାଖେରୀ ଉପତ୍ୟକା । ଏଗୁଡ଼ିକର ସର୍ବମୋଟ ଆୟତନ ୬୬୭୭ ବର୍ଗ କିଲୋମିଟର । ନଂଦନକାନନ ଚିଡ଼ିଆଖାନାରେ ଧଳାବାଘ ଓ ସିଂହ ସଫାରି ଅଛି ।

—

Digitized by srujanika@gmail.com

# ମଣିଷକୃତ ଜଙ୍ଗଲ

ଜଂଗଲର ଉପକାରିତା ଓ ଜନସାଧାରଣଂକ ବ୍ୟବହାରପାଇଁ କାଠର ଅଭାବ ବିଷୟରେ କାହାର ଦ୍ୱିମତ ନାହିଁ । ଜଂଗଲ କଟା ଓ ଅବକ୍ଷୟ ବଢ଼ି ଚାଲିଥିଲାବେଳେ, ଜଂଗଲରୁ ଆବାଦ ହେଉଥିବା କାଠ ଓ ଜାଳେଣି କାଠର ଚାହିଦା ବଢ଼ି ଚାଲିଛି । ସେଥିପାଇଁ ପ୍ରଥମ ପଂଚବାର୍ଷିକ ଯୋଜନାକାଳରୁ ଯେତିକି ପରିମାଣରେ ଜଂଗଲ କଟା ବା ନଷ୍ଟ ହେଉଛି, ସର୍ବନିମ୍ନ ସେତିକି ପରିମାଣରେ ନୂତନ ଜଂଗଲ ସୃଷ୍ଟିପାଇଁ ପଦକ୍ଷେପ ନିଆଯାଇଛି । ବନୀକରଣ-ଦ୍ୱାରା କୃତ୍ରିମ ଜଂଗଲ ସୃଷ୍ଟି ସମ୍ଭବପର ହୋଇଛି । ଏ ସଂପର୍କରେ ବିଭିନ୍ନ ବନୀ-କରଣ ଯୋଜନାର ଏକ ଚିତ୍ର ଦିଆଗଲା ।

**(୧) ଉପକୂଳବର୍ତ୍ତୀ ବନୀକରଣ** – ବାତ୍ୟାରୁ ରକ୍ଷା ପାଇବାପାଇଁ ରାଜ୍ୟର ସମୁଦ୍ର କୂଳେ କୂଳେ ଝାଉଁ ଜଂଗଲ ସୃଷ୍ଟି କରାଯାଇଛି । ଏହା ପବନର ତୀବ୍ର ବେଗକୁ ପ୍ରତିରୋଧ କରେ । ତତ୍‌ସଂଗେ ପାକଳ ଗଛର କାଠ ସ୍ଥାନୀୟ ଲୋକଂକ ଚାହିଦା ମେଣ୍ଟାଏ ।

**(୨) ପୁନଃବନୀକରଣ** – ଯେଉଁ ଜଂଗଲରୁ ଗଛ କଟାହୋଇ ପଦା ହୋଇଛି, ସେହି ଜାଗାରେ ଚାରା ଗଛ ଲଗାଇ ପୁନଃ ବନୀକରଣ କରାଯାଏ । ନର୍ସରୀରେ ଚାରା ପ୍ରସ୍ତୁତ କରି ଏହା ନିର୍ବାଚିତ ସ୍ଥାନରେ ରୋପଣ କରାଯାଏ । ବ୍ୟାବସାୟିକ ଦୃଷ୍ଟିକୋଣରୁ ଲାଭବାନ ସାଗୁଆନ, ଗମ୍ହାର ଇତ୍ୟାଦି ଲଗାଇ ପୁନଃବନୀକରଣ ମଧ୍ୟ କରାଯାଏ ।

**(୩) ଉଜୁଡ଼ା ଜଂଗଲର ପୁନରୁଦ୍ଧାର** – ଯେଉଁ ଜଂଗଲ ଉଜୁଡ଼ା ହୋଇଯାଉଛି ଏବଂ କେବଳ ଗୁଳ୍ମମାନ ଅଛି, ସେହିପରି ଅଂଚଳରେ ଏହାର ପୁନରୁଦ୍ଧାର ହୁଏ । ବିଶେଷତଃ ଉଜୁଡ଼ା ଶାଳ ଜଂଗଲର ପୁନରୁଦ୍ଧାର ହୋଇଥାଏ । ଏହି ଅଂଚଳକୁ ଗୋଚାରଣ ଓ ମଣିଷର ପ୍ରାଦୁର୍ଭାବରୁ ରକ୍ଷା କରାଯିବା ଫଳରେ, ଗଛର ଖୁଣ୍ଟା ମୂଳରୁ ପ୍ରାକୃତିକ ନୂଆ ଗଛ ବାହାରେ । ଏହିପରି ପୁନରୁଦ୍ଧାର ହୋଇଥିବା ଜଂଗଲରୁ ଜାଳ ଓ ଛୋଟ କାଠଗଡ଼ି ମିଳେ ।

Digitized by srujanika@gmail.com

ଏହା ସ୍ଥାନୀୟ ଲୋକଙ୍କର ଆବଶ୍ୟକତା ମେଣ୍ଟାଇଥାଏ । ଏହି ଜଂଗଲ ଅଂଚଳର ଚାରିପାଖରେ ସୁରକ୍ଷା ପାଇଁ ଗାତ ଖୋଳାହୋଇଥାଏ ।

(୪) ସାମାଜିକ ବନୀକରଣ – ଏହା ଗ୍ରାମମାନଙ୍କରେ ଅନାବାଦୀ କିମ୍ବା ଅନ୍ୟାନ୍ୟ ଜମିରେ ଗୋଷ୍ଠୀଗତ ଭାବରେ ସୃଷ୍ଟି କରାଯାଇଥାଏ । ଜଂଗଲର ଅବକ୍ଷୟ ଫଳରେ ଓ ଲୋକଙ୍କର କାଠର ଚାହିଦା ବଢ଼ିବା ଫଳରେ, ସାମାଜିକ ବନୀକରଣ ପନ୍ଥାର ଉଦ୍‌ଭବ ହୋଇଛି । ଗ୍ରାମବାସୀମାନେ ଏହି ଗ୍ରାମ୍ୟ ଜଂଗଲ ସୃଷ୍ଟି କରନ୍ତି । ଏହାଫଳରେ ଗ୍ରାମବାସୀଂକର ଜାଳେଣି କାଠ, ଖୁଣ୍ଟ ଓ ଗୋଖାଦ୍ୟର ଅଭାବ ଦୂରୀଭୂତ ହୋଇଥାଏ ।

(୫) ପତିତ ଜମିର ବନୀକରଣ – ଯେଉଁ ଜାଗାରେ ସରକାରୀ ପତିତ ଜମି ଚାଷପାଇଁ ଅନୁପଯୁକ୍ତ, ସେହି ସ୍ଥାନରେ ଅଁଳା, ତୁନ୍, ଶିରିଷ, କରଂଜ, କଂଚୁ ଇତ୍ୟାଦି ଗଛ ଲଗାଯାଇ ଲୋକଙ୍କର ଚାହିଦା ମେଣ୍ଟା-ଯାଇଥାଏ ।

(୬) ବ୍ୟାବସାୟିକ ବୃକ୍ଷରୋପଣ – ଏହି ଯୋଜନାରେ ଜଂଗଲ ଜମିରେ ମୂଲ୍ୟବାନ୍ ଗଛ, ଯଥା – ସାଗୁଆନ, ଶିଶୁ, ଗମ୍ଭାରୀ ଓ ଇଉକାଲିପଟାସ ଗଛ ଲଗାଯାଏ ।

(୭) କ୍ଷତିପୂରକ ବନୀକରଣ – ଶିଳ୍ପ, ଜଳସେଚନ ଇତ୍ୟାଦି ଯୋଜନା ପାଇଁ ଯେଉଁ ଜଂଗଲ ଜମି ବ୍ୟବହୃତ ହୁଏ, ଆଇନ ଅନୁସାରେ ସେହି ପରିମାଣର ଅନାବାଦୀ ସରକାରୀ ଜମିରେ ବୃକ୍ଷରୋପଣ କରି ନୂଆ ଜଂଗଲ ସୃଷ୍ଟି କରାଯାଏ । ଏହି ବନୀକରଣର ଖର୍ଚ୍ଚ ସଂପୃକ୍ତ ଅନୁଷ୍ଠାନ, କଂପାନୀ ବା ବିଭାଗ ଦେଇଥାନ୍ତି ।

(୮) ସହରରେ ବନୀକରଣ – ଗ୍ରୀଷ୍ମଦିନରେ ସହରମାନଙ୍କରେ କଂକ୍ରିଟ୍ ଘରଯୋଗୁ ଓ ପିଚୁଦିଆ ପକ୍କା ରାସ୍ତା ଯୋଗୁଁ ପ୍ରବଳ ଗରମ ଅନୁଭୂତ ହୁଏ । ସହରମାନଙ୍କରେ ପ୍ରଦୂଷଣ ରୋକିବା ପାଇଁ ମଧ୍ୟ ଆବଶ୍ୟକତା ଅନୁଭୂତ ହୁଏ । ତେଣୁ ଭୁବନେଶ୍ୱରରେ ଜଳବାୟୁ ଶୀତଳ ରଖିବାପାଇଁ ଓ ପ୍ରଦୂଷଣ ରୋକିବାପାଇଁ ରାସ୍ତାକଡ଼ମାନଙ୍କରେ ଓ ଖୋଲା ଜାଗାରେ ବନୀକରଣ କରାଯାଉଛି ।

—

Digitized by srujanika@gmail.com

# ଜଙ୍ଗଲ ଓ ଜନସହଯୋଗ ଏବଂ
# ଜଙ୍ଗଲ ସୁରକ୍ଷା ଓ ଜାତୀୟ ବନନୀତି

ସ୍ଥାନୀୟ ଜନସାଧାରଣଂକ ସହଯୋଗ ବିନା ଜଂଗଲର ସୁରକ୍ଷା ଅସମ୍ଭବ ବୋଲି ଅନୁଭୂତ ହେଲାଣି । ତେଣୁ ଜନଜାଗରଣ ସୃଷ୍ଟିପାଇଁ ଉଦ୍ୟମ ଅବ୍ୟାହତ ରହିଛି । ଜଂଗଲ ବନବିଭାଗର କର୍ମଚାରୀଂକଦ୍ୱାରା ପରିଚାଳିତ ହେଉଥିବାବେଳେ, ଉଜୁଡ଼ା ଜଂଗଲପାଇଁ ଯୌଥ ବନପରିଚାଳନା ବ୍ୟବସ୍ଥା ଅନୁସୃତ ହେଉଛି । ଏଥିରେ ଜଂଗଲ ନିକଟବର୍ତ୍ତୀ ଗ୍ରାମମାନଂକରେ ଲୋକଙ୍କୁ ନେଇ ବନ-କମିଟିମାନ ଗଠିତ ହୋଇ ସେମାନଂକ ସହାୟତାରେ ଜଂଗଲ ସୁରକ୍ଷା ଓ ପରିଚାଳନା କରାଯାଉଛି । ଏହି ଜଂଗଲମାନଂକରୁ ସ୍ଥାନୀୟ ଜନ-ସାଧାରଣ ସେମାନଂକର କାଠପାଇଁ ଆବଶ୍ୟକତା ମେଣ୍ଟାଇବା ନିମିତ୍ତ ବ୍ୟବସ୍ଥା ଅଛି । ରାଜ୍ୟରେ ପ୍ରାୟ ତିନିହଜାର ବନକମିଟିମାନ ଗଠିତ ହୋଇଛି ଏବଂ ଏମାନେ ଅଢ଼େଇଲକ୍ଷହେକ୍ଟର୍ ଜଂଗଲରେ ଯୌଥ ବନ-ପରିଚାଳନା କରୁଛନ୍ତି ।

ଅରଣ୍ୟ କ୍ଷୟକୁ ରୋକାଯାଇ ପାରିଲେ ଦେଶର ଜଳବାୟୁ ନିୟନ୍ତ୍ରିତ ହେବା ସଂଗେ ସଂଗେ ମୃତ୍ତିକା କ୍ଷୟ ମଧ୍ୟ ରୋକାଯାଇପାରିବ । ବହୁ ସ୍ଥାନରେ ପୂର୍ବରୁ ଜଂଗଲ କାଟି ଶିଳ୍ପକାରଖାନା, ଜଳସେଚନ ପ୍ରକଳ୍ପ ବା ଜଳଭଣ୍ଡାରମାନ ନିର୍ମିତ ହୋଇଛି । ଜଂଗଲ କାଟିବା ଉପରେ କୌଣସି ନିୟନ୍ତ୍ରଣ ନଥିବାରୁ ଅତୀତରେ ଅବିଚାରିତ ଭାବରେ ଜଂଗଲ ସଫା କରାଯାଉଥିଲା । ୧୯୮୦ ମସିହାରେ ଭାରତ ସରକାର ଜଂଗଲ ସୁରକ୍ଷା ଆଇନ ପ୍ରଣୟନ କଲେ । ଏହି ଆଇନ ବଳରେ ଭାରତ ସରକାରଂକ ବିନା ଅନୁମତିରେ ଜଂଗଲଜମି ଅଣଜଂଗଲ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇପାରିବ ନାହିଁ । ଯଦି ଜଂଗଲ ଜମି ବ୍ୟବହାର କରିବା ଅନିବାର୍ଯ୍ୟ ହୁଏ, ତେବେ ଅନୁରୂପ ପରିମାଣ ସରକାରୀ ଅନାବାଦୀ ଜମିରେ ନୂତନ ଜଂଗଲ ସୃଷ୍ଟି କରିବାକୁ ପଡ଼ିବ । ଏହାର ଖର୍ଚ୍ଚ ସଂପୃକ୍ତ କର୍ତ୍ତୃପକ୍ଷ ବହନ କରିବେ । ଏହି କଟକଣା ଫଳରେ ଅବିଚାରିତ ଜଂଗଲ-ନଷ୍ଟ ବହୁ ପରିମାଣରେ ରୋକାଯାଇ ପାରିଛି । ମଣିଷ-ସମାଜ ପ୍ରତି

*Digitized by srujanika@gmail.com*

ଜଂଗଲର ଅବଦାନ ସ୍ମରଣ କରାଇବାପାଇଁ ପ୍ରତିବର୍ଷ ବର୍ଷାଋତୁ ଆରମ୍ଭରେ ଜୁଲାଇ ମାସ ପ୍ରଥମ ସପ୍ତାହରେ ଦେଶରେ 'ବନମହୋତ୍ସବ' ପାଳିତ ହୁଏ । ଏହିଦିନ ନୂଆ ଗଛ ଲଗାଇବା ବିଧି ।

୧୯୮୮ ମସିହାରେ ଭାରତ ସରକାର ଜାତୀୟ ବନନୀତି ପ୍ରଣୟନ କଲେ । ତଦନୁଯାୟୀ ଅରଣ୍ୟନୀତିର ମୁଖ୍ୟ ଉଦ୍ଦେଶ୍ୟଗୁଡ଼ିକ ନିମ୍ନ ପ୍ରକାରରେ ସ୍ଥିରୀକୃତ ହୋଇଛି –

– ଜଂଗଲ ସୁରକ୍ଷାକରି ଦେଶରେ ପରିବେଶର ପରିସ୍ଥିତିକ ସନ୍ତୁଳନ ରକ୍ଷା ।

– ଜଂଗଲରେ ଥିବା ବିଭିନ୍ନ ପ୍ରାକୃତିକ ଉଦ୍‌ଭିଦ ଓ ବନ୍ୟପ୍ରାଣୀର ସୁରକ୍ଷା ।

– ନଦୀ ଓ ଜଳଭଣ୍ଡାରର ଉପ ଅଂଚଳରେ ଜଂଗଲ ସୃଷ୍ଟିଦ୍ୱାରା ମୃତ୍ତିକା କ୍ଷୟ ନିରୋଧ ଏବଂ ଏହାଫଳରେ ବନ୍ୟା ଓ ମରୁଡ଼ି ଅବସ୍ଥାର ନିୟନ୍ତ୍ରଣ ।

– ବିଭିନ୍ନ ପ୍ରକାରର ବନୀକରଣ ଯୋଜନା କାର୍ଯ୍ୟକାରୀ କରି ଉତ୍ପାଦିକା-ଶକ୍ତିବିହୀନ ଓ କ୍ଷୟପ୍ରାପ୍ତ ଜମିରେ ଜଂଗଲ ସୃଷ୍ଟି ।

– ଆଦିବାସୀ ଓ ଗ୍ରାମାଂଚଳରେ ଜନସାଧାରଣଂକର ଜାଳେଣି କାଠ, ଅନ୍ୟାନ୍ୟ କାଠ ଓ ଗୋଖାଦ୍ୟର ଆବଶ୍ୟକତା ମେଣ୍ଟାଇବା ।

– ଜଙ୍ଗଲର ସୁପରିଚାଳନାଦ୍ୱାରା ଦେଶବାସୀଂକ ଆବଶ୍ୟକତା ମେଣ୍ଟାଇବା ।

– କାଠ ବଦଳରେ ଅନ୍ୟାନ୍ୟ ଦ୍ରବ୍ୟ, ଯଥା – ଲୁହା, ଆଲୁମିନିୟମ ଇତ୍ୟାଦିର ବ୍ୟବହାର ।

– ଜଂଗଲରୁ ଉତ୍ପାଦିତ ଦ୍ରବ୍ୟଗୁଡ଼ିକର ପୂର୍ଣ୍ଣ ସଦୁପଯୋଗ ।

– ଏହିସବୁ ଉଦ୍ଦେଶ୍ୟ ପୂରଣପାଇଁ ବ୍ୟାପକ ଜନଜାଗରଣ ଓ ଜନ-ଆଂଦୋଳନ ସୃଷ୍ଟି ।

ଜଂଗଲ ଆମର ଜାତୀୟ ସଂପଦ । ପୁନଶ୍ଚ ଏହାଦ୍ୱାରା ଆମ ଜଳବାୟୁ ଓ ପରିବେଶ ସୁରକ୍ଷିତ ହୋଇ ରହିଛି । ତେଣୁ ଜଂଗଲକୁ ବ୍ୟାବସାୟିକ ଉଦ୍ଦେଶ୍ୟରେ ଅବିଚାରିତ ଭାବେ ଉପଯୋଗ କରାଯିବା ଉଚିତ ନୁହେଁ ।

ଏହାହିଁ ଆମ ବଣଜଂଗଲର କଥା ।



Digitized by srujanika@gmail.com